# ଭୁବନେଶ୍ୱର ଭ୍ରମଣ ।

ଶ୍ରୀରାଧାକୃଷ୍ଣ ବସୁ, ଏମ୍, ଏ, ଙ୍କ

ଦ୍ୱାରା

ସଙ୍କଳିତ ଓ ପ୍ରକାଶିତ

PRINTED BY ... DAS

MUKUR PRESS,

CUTTACK.

1914.

ମୂଲ୍ୟ ।୵ ଦୁଇଅଣା ମାତ୍ର

# ସ୍ୱର୍ଣ୍ଣାଦ୍ରିମହୋଦୟ ।

( ମୂଳ-ସଂସ୍କୃତ )

ଏଥିରେ ଭୁବନେଶ୍ୱର ବା ଏକାମ୍ରକ୍ଷେତ୍ରର ଯାବତୀୟ ଜ୍ଞାତବ୍ୟ ପୌରାଣିକ ବିବରଣମାନ ଅତି ସରଳଭାଷାରେ ସଂକ୍ଷିପ୍ତଭାବରେ ବର୍ଣ୍ଣିତ ହୋଇଅଛି । ତୀର୍ଥଯାତ୍ରୀମାନଙ୍କ ନିକଟରୁ ଏଥିରୁ ଖଣ୍ଡିଏ ଖଣ୍ଡିଏ ଥିଲେ ଦର୍ଶନ, ସ୍ନାନ ଓ ପୂଜା ଇତ୍ୟାଦିର ବିଧିମାନ ଏବଂ ଚତୁର୍ଦ୍ଦଶଯାତ୍ରାର ବିବରଣ ସେମାନେ ଅନାୟାସରେ ଜାଣି ପାରିବେ ।

| | | |
|---|---|---|
| ଦେବନାଗର ଅକ୍ଷରରେ ମୁଦ୍ରିତ | ... | ୫ ୦ ୯ |
| ଓଡ଼ିଆ ,, ,, | ... | ୫ ୦ ୯ |

ପ୍ରାପ୍ତିସ୍ଥାନ ;—ଶ୍ରୀରାଧାକୃଷ୍ଣ ବସୁ ଏମ୍. ଏ.,
ମାଣିକଘୋଷ ବଜାର,
ପୋଃ ଚାନ୍ଦନୀଚଉକ,
କଟକ ।

# ସୂଚିପତ୍ର

# ମୁଖବନ୍ଧ ।

ଭୁବନେଶ୍ୱରର ପ୍ରସିଦ୍ଧ ଶ୍ରୀଲିଙ୍ଗରାଜ ମହାଦେବଙ୍କ ମନ୍ଦିର ଏବଂ ତାହା ନିକଟରେ ଥିବା ଅପରାପର ମନ୍ଦିରମାନଙ୍କର ଶିଳ୍ପନୈପୁଣ୍ୟ ଦେଖି ବିମୋହିତ ହୋଇ କି ସ୍ୱଦେଶୀ କି ବିଦେଶୀ ଅନ୍ୟତର ସହିତ ଭୂୟସୀ ପ୍ରଶଂସା କରିଅଛନ୍ତି । ଏହି ସ୍ଥାନ ଦେଖିବା ନିମିତ୍ତ ସମଗ୍ର ଭାରତବର୍ଷରୁ ଯାତ୍ରୀମାନେ ଆସିଥାନ୍ତି । ଏଠାରୁ ଆସି କେଉଁ କେଉଁ ସ୍ଥାନ ବିଶେଷଭାବରେ ଦେଖିବା ଉଚିତ କିମ୍ବା କିପରି ବିଧିରେ କ୍ଷେତ୍ରପାଳ ନିୟମ କରିବା ଉଚିତ ଅଥବା କିପରି ଲୋକଙ୍କୁ ପଣ୍ଡା ନିଯୁକ୍ତ କରିବା ବିଧେୟ—ଏହି ସମସ୍ତ ବିଷୟ ଯଥାଯଥ ଭାବରେ ବର୍ଣ୍ଣିତ କରି ବୈଦେଶିକ ଯାତ୍ରୀମାନଙ୍କର ସୁବିଧା କରିଦେବା ଅମ୍ଭର ପ୍ରଧାନ ଉଦ୍ଦେଶ୍ୟ । ଏତଦ୍ଦ୍ୱାରା କାହାର କିଞ୍ଚିତ୍ ଉପକାର ହେଲେ ଶ୍ରମ ସଫଳ ଜ୍ଞାନ କରିବୁଁ । ପରିଶେଷରେ ସ୍ୱୀକାର କରୁଅଛୁଁ ଯେ ବିଶ୍ୱକୋଷ, ଡାକ୍ତର ରାଜେନ୍ଦ୍ରଲାଲ ମିତ୍ରଙ୍କର ଓଡ଼ିଶା ଇତିହାସ, ହଣ୍ଟର ସାହେବଙ୍କ ଓଡ଼ିଶା ଇତିହାସ, ଭୁବନେଶ୍ୱରର ପୌରାଣିକ ଗ୍ରନ୍ଥ-ସ୍ୱର୍ଣ୍ଣାଦ୍ରିମହୋଦୟ ଏବଂ ଏକାମ୍ରପୁରାଣ ପ୍ରଭୃତିରୁ ସାହାଯ୍ୟ ଗ୍ରହଣ କରି ଏହାର ପୁଷ୍ଟି ସାଧନ କରିଅଛୁଁ ।

# ଭୁବନେଶ୍ୱର ବିବରଣ ।

## ଉପକ୍ରମଣିକା ।

ଶ୍ରୀ ଲିଙ୍ଗରାଜ ମନ୍ଦିରର ଅବସ୍ଥିତି—ବେଙ୍ଗଲ-ନାଗପୁର ରେଲ୍-ଓଏର ଭୁବନେଶ୍ୱର ଷ୍ଟେସନଠାରୁ ଦୁଇ ମାଇଲ ଦକ୍ଷିଣରେ ଲିଙ୍ଗରାଜ ମନ୍ଦିର ଅବସ୍ଥିତ । ମନ୍ଦିରର ପୂର୍ବଦିଗରେ ମନ୍ଦିରର ଅଫିସ ଓ ବଙ୍ଗଳା ଏବଂ ପୁଲିସ ଥାନା, ଦକ୍ଷିଣ ଦିଗରେ ହାଟ ଏବଂ ମାଇନର ସ୍କୁଲ, ପଶ୍ଚିମ ଦିଗରେ ଦାତବ୍ୟ ଚିକିତ୍ସାଳୟ ଏବଂ ଉତ୍ତର ଦିଗରେ ଅଧିବାସୀମାନଙ୍କର ବାସ ଗୃହାବଳୀ ଅଛି ।

ଗତାୟାତର ସୁବିଧା—ଷ୍ଟେସନଠାରୁ ମନ୍ଦିର ପର୍ଯ୍ୟନ୍ତ ପ୍ରଶସ୍ତ ପକ୍କା ସଡ଼କ ଅଛି । ଏହି ସଡ଼କ ମନ୍ଦିରର ପୂର୍ବଦ୍ୱାର ନିକଟ ଦେଇ ଜଗନ୍ନାଥ ସଡ଼କ ସଙ୍ଗେ ମିଶିଅଛି ଏବଂ ଏହାର ଗୋଟିଏ ଶାଖା ପଶ୍ଚିମ ଦିଗରେ ଖଣ୍ଡଗିରି ନିକଟରେ ଖୋରଧା ସଡ଼କ ସଙ୍ଗେ ମିଶିଅଛି । ଷ୍ଟେସନ ନିକଟରେ ପ୍ରାୟ ସବୁ ସମୟରେ ଗୋରୁଗାଡ଼ି ମିଳିଥାଏ । ମନ୍ଦିର ନିକଟକୁ ଭଡ଼ା ଛଅଅଣାଠାରୁ ଆଠଅଣା ପର୍ଯ୍ୟନ୍ତ । ଉକ୍ତ ଗାଡ଼ିମାନଙ୍କର ଦୈନିକ ଭଡ଼ା ଏକ ଟଙ୍କା । ପୂର୍ବରୁ ବନ୍ଦୋବସ୍ତ କଲେ ପାଲିକି ମଧ୍ୟ ମିଳି ପାରିବ ।

ରହିବାର ଘର—ବିନ୍ଦୁସାଗରର ପୂର୍ବପାର୍ଶ୍ୱରୁ ମନ୍ଦିର ପର୍ଯ୍ୟନ୍ତ ଅନେକ-ଗୁଡ଼ିଏ ଭଡ଼ାଘର ଅଛି । ଏଥିରେ ରହିଲେ ସାଧାରଣଜନମାନଙ୍କରେ

ଜଣପ୍ରତି ଦୁଇପଇସା ଭଡ଼ା ଦେବାକୁ ହୁଏ । ମାତ୍ର ପର୍ବଦିନମାନଙ୍କରେ ଭଡ଼ା ପରିମାଣ ବୃଦ୍ଧି ହୋଇଥାଏ । ଉକ୍ତ ସାଧାରଣ ଭଡ଼ାଘର ଛଡ଼ା ମନ୍ଦିରର ଦୁଇଗୋଟି ବଗିଚା ଅଛି । ଏହାର ପ୍ରତି କାମରାକୁ ଦୈନିକ ଏକଟଙ୍କା ଭଡ଼ା ପଡ଼େ । ଡିଷ୍ଟ୍ରିକ୍ଟବୋର୍ଡ଼ର ଡାକବଙ୍ଗଳା ମଧ୍ୟ ଅଛି । ଷ୍ଟେସନରେ ଥାର୍ଡ଼କ୍ଲାସ ଯାତ୍ରୀମାନଙ୍କର 'ଓ୍ୱେଟିଂ ରୁମ୍' ଭିନ୍ନ ସେକେଣ୍ଡ କ୍ଲାସ ଓ ଫାଷ୍ଟ କ୍ଲାସ ଯାତ୍ରୀମାନଙ୍କ ପାଇଁ ମଧ୍ୟ 'ଓ୍ୱେଟିଂ ରୁମ୍' ଅଛି ।

ସ୍ନାନୀୟ ଓ ପାନୀୟ ଜଳ—ଏଠାରେ ଅନେକଗୁଡ଼ିଏ ପୁଷ୍କରିଣୀ ଅଛି । ସେମାନଙ୍କ ମଧ୍ୟରେ ମନ୍ଦିରଠାରୁ କିଞ୍ଚିତ୍ ଦୂରରେ ଥିବା ଗୌରୀକୁଣ୍ଡର ଜଳ ସ୍ନାନ ପକ୍ଷରେ ସର୍ବୋତ୍କୃଷ୍ଟ । କୁଣ୍ଡଟିକୁ ଏବଂ ତାହାର ଜଳକୁ ଦେଖିଲେ ମନରେ ଆନନ୍ଦ ଜାତ ହୁଏ । ଏପରି ଉତ୍କୃଷ୍ଟ ପୁଷ୍କରିଣୀ ଅନ୍ୟତ୍ର ଅଛି କି ନା ସନ୍ଦେହ । ଏଥିରେ ଅନେକ ମାଛ ଅଛନ୍ତି । ଯାତ୍ରୀମାନେ ସେମାନଙ୍କର କୌତୁକ ଦେଖିବା ନିମିତ୍ତ ମୁଢ଼ି ବା ଖଇ ନେଇ ଯାଇଥାନ୍ତି । ଜଳରେ ନିକ୍ଷିପ୍ତ ମୁଢ଼ି ବା ଖଇ ଖାଇଲାବେଳେ ଅନେକ ମତ୍ସ୍ୟଙ୍କର ଏକତ୍ର ସନ୍ତରଣ ଦେଖିବା ଆମୋଦଜନକ । ଏଠାରେ ଦୁଧିଆକୁଣ୍ଡ ନାମରେ ଅପର ଏକ ପୁଷ୍କରିଣୀର ଜଳ ପାନୀୟ ଜଳ ମଧ୍ୟରେ ସର୍ବୋତ୍କୃଷ୍ଟ । ଭୁବନେଶ୍ୱରର କୂପମାନଙ୍କର ଜଳ ପିଇବା ପକ୍ଷରେ ମଧ୍ୟ ଉତ୍କୃଷ୍ଟ ।

ଭୋଜନ—ରୋଷେଇ କରିବାକୁ ହେଲେ ସମସ୍ତ ରୋଷେଇ ସରଞ୍ଜାମ ଏଠାରେ ମିଳିଥାଏ । ହିନ୍ଦୁମାନଙ୍କ ପକ୍ଷରେ ମହାପ୍ରସାଦ ସେବନ ସୁବିଧାଜନକ । ଚାରିଅଣା ପଇସାରେ ଜଣେ ମନୁଷ୍ୟର ଉପଯୋଗୀ ଉତ୍ତମ ଅନ୍ନ ମହାପ୍ରସାଦ ମିଳି ପାରିବ ।

ଦର୍ଶନୀୟ ସ୍ଥାନ—ଶ୍ରୀ ଲିଙ୍ଗରାଜମନ୍ଦିର, ପାର୍ବତୀମନ୍ଦିର, ଅନନ୍ତ ବାସୁଦେବମନ୍ଦିର, ଗୌରୀମନ୍ଦିର, ମୁକ୍ତେଶ୍ୱରମନ୍ଦିର, ଗୌରୀକୁଣ୍ଡ ପ୍ରଭୃତି ପଞ୍ଚକୁଣ୍ଡ, ରାଜାରାଣୀମନ୍ଦିର, ଭାସ୍କରେଶ୍ୱରମନ୍ଦିର, ମେଘେଶ୍ୱରମନ୍ଦିର, ବ୍ରହ୍ମେଶ୍ୱରମନ୍ଦିର ପରଶୁରାମେଶ୍ୱରମନ୍ଦିର, ବୋଇତାଳ ଦେଉଳ, ସିଦ୍ଧେଶ୍ୱରମନ୍ଦିର, ସିଂହକୁଅଗଡ଼, ଦେବଣସିଗଢ଼, ଗୋପାଳତେଳେଶ୍ୱର, ଯମେଶ୍ୱରମନ୍ଦିର, ଭୀମଟଙ୍ଗି, ସାରୀଦେଉଳ, ଛତଶାଳାମନ୍ଦିର, କପିଳେଶ୍ୱର, ଖଣ୍ଡଗିରି, ଉଦୟଗିରି, ଧଉଳିଗିରି, ବିନ୍ଦୁସାଗର ପୁଷ୍କରଣୀ, ସହସ୍ରଲିଙ୍ଗ ପୁଷ୍କରଣୀ, ଉତ୍ତରେଶ୍ୱର ମନ୍ଦିର ।



# ଭୁବନେଶ୍ୱରର ଐତିହାସିକ ବିବରଣ ।

ପୁରୀ ଜିଲ୍ଲା ଅନ୍ତର୍ଗତ ଭୁବନେଶ୍ୱର ଗ୍ରାମ ଅତି ପ୍ରାଚୀନ କାଳରେ ଗୋଟିଏ ବହୁଜନପୂର୍ଣ୍ଣ, ସମୃଦ୍ଧିଶାଳୀ ବୃହତ୍ ନଗର ଥିଲା । ସ୍ୱନାମଧନ୍ୟ, ସୁପ୍ରସିଦ୍ଧ ଉତ୍କଳ ଇତିହାସଲେଖକ ଡାକ୍ତର ରାଜେନ୍ଦ୍ରଲାଲଙ୍କ ମତରେ ଏହି ଭୁବନେଶ୍ୱର ଉତ୍କଳ ସମ୍ରାଟ ଯଯାତିକେଶରୀଙ୍କ ପୂର୍ବରେ କଳିଙ୍ଗନଗରୀ ନାମରେ ଅଭିହିତ ହେଉଥିଲା । ସେସମୟରେ ଏହି ନଗରୀ ବହୁ ବୃହତ୍ ବୌଦ୍ଧମଠରେ ପରିପୂର୍ଣ୍ଣ ଥିଲା । ଏହାର ପୂର୍ବଦିଗରେ ଧଉଳିପାହାଡ଼ ଏବଂ ପଶ୍ଚିମଦିଗରେ ଖଣ୍ଡଗିରି ଓ ଉଦୟଗିରି ବୌଦ୍ଧ ସନ୍ନ୍ୟାସୀମାନଙ୍କର ତପସ୍ୟାସ୍ଥଳ ଥିଲା । ଉକ୍ତ ପର୍ବତଦ୍ୱୟରେ ବହୁସଂଖ୍ୟକ ଗୁମ୍ଫା ଏବଂ ଶିଳାଲିପିସମୂହ ଏ ପବିତ୍ର ବୌଦ୍ଧାଶ୍ରମର ପରିଚୟ ପ୍ରଦାନ କରୁଅଛି । ଭୁବନେଶ୍ୱର ବୌଦ୍ଧଯୁଗରେ ଉତ୍କଳୀୟ ବୌଦ୍ଧମାନଙ୍କର କେନ୍ଦ୍ରସ୍ଥଳୀ ଥିଲା । ପରେ ଶୈବଧର୍ମାବଲମ୍ବୀ ଉତ୍କଳରାଜ ଯଯାତିକେଶରୀ ପଞ୍ଚମ ଶତାବ୍ଦିର ମଧ୍ୟଭାଗରେ ଯାଜପୁର ପରିବର୍ତ୍ତେ ଭୁବନେଶ୍ୱରକୁ ରାଜଧାନୀ କଲେ ।

ସେ ସନାତନ ହିନ୍ଦୁଧର୍ମର ପ୍ରତିଷ୍ଠା ଉଦ୍ଦେଶ୍ୟରେ ଏହି ସମୟରୁ ସୁପ୍ରସିଦ୍ଧ ଭୁବନେଶ୍ୱର ମନ୍ଦିର ନିର୍ମାଣ କରାଇବାକୁ ପ୍ରବୃତ୍ତ ହେଲେ । * ଅତି ମଧ୍ୟ ଏଦେଶରେ ବୌଦ୍ଧମାନଙ୍କୁ ଯୁକ୍ତିରେ ପରାସ୍ତ କରିବା-ଭଳି ସର୍ବଶାସ୍ତ୍ରପାରଦର୍ଶୀ ବେଦଜ୍ଞ ବ୍ରାହ୍ମଣର ଅଭାବ ଥିବାରୁ

---

* ଏହି ମନ୍ଦିର ନିର୍ମାଣକାର୍ଯ୍ୟ ଲଲାଟେନ୍ଦୁ କେଶରୀ ୫୮୮ ଶକାବ୍ଦରେ ବା ୬୬୬ ଖ୍ରୀଷ୍ଟାବ୍ଦରେ ଶେଷ କଲେ । ଏହା ନିମ୍ନୋକ୍ତ ଶ୍ଳୋକରୁ ସୂଚିତ ହେଉଅଛି ।—

ଗଜାଷ୍ଟେଷୁମିତେ ଜାତେ ଶକାବ୍ଦେ କୃତ୍ତିବାସସଃ ।
ପ୍ରାସାଦମକରୋଦ୍ରାଜା ଲଲାଟେନ୍ଦୁଶ୍ଚ କେଶରୀ ॥

କାନ୍ୟକୁବ୍ଜ (କନୌଜ) ରୁ ଦଶସହସ୍ର ବେଦଜ୍ଞ ବ୍ରାହ୍ମଣଙ୍କୁ ଅଣାଇ ଥିଲେ । କଥିତ ଅଛି ଯେ ଉକ୍ତ ବ୍ରାହ୍ମଣମାନେ ଯାଜପୁରଠାରେ ବେଦ-ବିଧି ଅନୁସାରେ ବହୁ ଯଜ୍ଞ ସମାଧାନ କରି ଉତ୍କଳାଧିପଙ୍କୁ ନିଜର ବେଦଜ୍ଞତାର ପରିଚୟ ପ୍ରଦାନ କରିଥିଲେ । ଉତ୍କଳାଧିପ ସେମାନଙ୍କୁ ଯାଜପୁର, ଭୁବନେଶ୍ୱର, ପୁରୀ ପ୍ରଭୃତି ଓଡ଼ିଶାର ପ୍ରଧାନ ପ୍ରଧାନ ସ୍ଥାନରେ ବହୁ ନିଷ୍କର ଭୂସମ୍ପତ୍ତି ପ୍ରଦାନ କରି ରଖାଇଲେ । କନୌଜାଗତ ଭୁବନେଶ୍ୱରର ବ୍ରାହ୍ମଣମାନେ ରାଜାଦେଶରେ ଭିନ୍ନ ଭିନ୍ନ ଉପାଧି ଗ୍ରହଣ କରି ଶ୍ରୀଲିଙ୍ଗରାଜମହାପ୍ରଭୁଙ୍କ ସେବାପୂଜାରେ ନିଯୁକ୍ତ ହେଲେ ।

ଅନନ୍ତର ବୌଦ୍ଧମାନେ ଏହି ନବାଗତ ବ୍ରାହ୍ମଣମାନଙ୍କ ସହ ଯୁକ୍ତିରେ ପରାସ୍ତ ହୋଇ ସେମାନଙ୍କ ମଧ୍ୟରୁ କେତେକ ଏ ସ୍ଥାନ ପରିତ୍ୟାଗ କରି ଚାଲିଗଲେ ଏବଂ ଅଳ୍ପ ସଂଖ୍ୟକ ବୌଦ୍ଧ ହିନ୍ଦୁଧର୍ମ୍ମ ଗ୍ରହଣ କରି 'ବଡ଼ୁ' ଉପାଧି ଧାରଣ ପୂର୍ବକ ଶ୍ରୀଲିଙ୍ଗରାଜ ମହାପ୍ରଭୁଙ୍କ ପୂଜା ନିମିତ୍ତ ଫୁଲ ବେଲପତ୍ରୀ ଯୋଗାଇବାକୁ ଶୂଦ୍ରସେବକ ହୋଇ ରହିଲେ । ଏହି ବଡ଼ୁମାନେ ଏପର୍ଯ୍ୟନ୍ତ ଏସ୍ଥାନର ଆଦିମ ନିବାସୀ ବୋଲି ଆତ୍ମପରିଚୟ ଦେଇଥାନ୍ତି । ଏମାନଙ୍କୁ ଏକାମ୍ରପୁରାଣରେ ଶବରାନ୍ୱୟ (ଶବରକୁଳଜ) ନାମରେ ଉଲ୍ଲେଖ କରାଯାଇ ଅଛି * । ପରବର୍ତ୍ତୀକାଳରେ ଅପର ଶ୍ରୋତ୍ରୀୟ ବ୍ରାହ୍ମଣମାନେ ଗଙ୍ଗାବଂଶୀୟ ରାଜାମାନଙ୍କ ଦ୍ୱାରା ଆନୀତ ହୋଇ "ଶାସନ" ନାମଧେୟ ସାହିରେ ବାସ କଲେ ।

---

* ତତସ୍ତେ ନଂଗମା ଭକ୍ତ୍ୟା ତସ୍ମିଦା ପ୍ରବୃତ୍ତହୋତ୍ରିମେ ।
କାଶ୍ୟେ ଲିଙ୍ଗ ଇତି ଖ୍ୟାତାସ୍ତେନ ମେ ଶବରାନ୍ୱୟାଃ ।
ଏତ ଏକାଂ ଶତ୍ରୁରକ୍ଷାନାଂ ଗୃହକାରେ ତୁ ଦର୍ଶନେ ।
ଅପରେଷାଂ ଚ ଶୂଦ୍ରାଣାଂ ନାଧିକାରଃ କଦାଚନ ।

ଶୂଦ୍ରମାନଙ୍କ ମଧ୍ୟରୁ କେବଳ ଏହି ଶବରାନ୍ୱୟୀ ବଡ଼ୁମାନଙ୍କର ଦେବବିଗ୍ରହ ସ୍ପର୍ଶରେ ଅଧିକାର ଅଛି । ଅପର ଶୂଦ୍ରମାନଙ୍କର ସେ ଅଧିକାର ନାହିଁ । ଏହି ବଡ଼ୁମାନେ ଫୁଲ ଓ

# "ବିଶ୍ୱକୋଷ" ବର୍ଣ୍ଣିତ ଭୁବନେଶ୍ୱରର ବିବରଣ ।

( ବଙ୍ଗଳାରୁ ଅନୁବାଦିତ )

ଭୁବନେଶ୍ୱର ବାସ୍ତବରେ ଭୁବନ ମଧ୍ୟରେ ଗୋଟିଏ ପ୍ରଶସ୍ତ ସ୍ଥାନ । ଏହାର ଅସଂଖ୍ୟ ଶିବମନ୍ଦିର, ହିନ୍ଦୁଶିଳ୍ପୀର ଅପୂର୍ବ ରଚନାକୌଶଳ, ଏହାର ନସ୍ତକମେ ତନ ଭାସ୍କରକାର୍ଯ୍ୟ ଯେ ଥରେ ମନୋଯୋଗପୂର୍ବକ ଦେଖିଅଛନ୍ତି, ସେ ମୁଗ୍ଧ ହୋଇଅଛନ୍ତି । ପ୍ରତ୍ନତତ୍ତ୍ୱଜ୍ଞାଙ୍କୁ ଅଜସ୍ର ଧନ୍ୟ-ବାଦ ନ ଦେଇ କେହି ରହି ପାରନ୍ତି ନାହିଁ । ହିନ୍ଦୁ, ମୁସଲମାନ ଓ ଖ୍ରୀଷ୍ଟାନ ପୁରାବିତ୍‌ମାନେ ଏହି ପବିତ୍ର ମନ୍ଦିରବହୁଳ ପ୍ରାଚୀନ ଭୂମିର ଉଲ୍ଲେଖ କରି ଯାଇଅଛନ୍ତି ।

* * * *

ସର୍ବପାପହରଂ ପୁଣ୍ୟଂ କ୍ଷେତ୍ରଂ ପରମ ଦୁର୍ଲଭଂ ।
ଲିଙ୍ଗକୋଟିସମାୟୁକ୍ତଂ ବାରାଣସୀସମପ୍ରଭଂ ।
ଏକାମ୍ରେକେତି ବିଖ୍ୟାତଂ ତୀର୍ଥାଷ୍ଟକସମନ୍ୱିତଂ । (ବ୍ରହ୍ମପୁରାଣ)

* * * *

---

ବେଲପଣ୍ଡ ହାଇ ଶ୍ରୀଚୈତନ୍ୟଙ୍କ ମହାପ୍ରଭୁଙ୍କ ଶିଷ୍ୟର ଅର୍ଥରୁ ବେଶ କରନ୍ତି । ସେ ଏମାନଙ୍କୁ ନିଜୋଷ ସେବକ ମଧ୍ୟ ବୁଝାଯାଏ । କେହି କେହି ଅନ୍ୟାୟ 'ଗୌରବତ୍ତୁ' ଓ 'ବଡୁ'ଙ୍କର ନାମ ସାଦୃଶ୍ୟ ଦେଖି ଉଚ୍ଚ ଶ୍ରେଣୀର ଲୋକଙ୍କର ଏକ ଜାତି ବୋଲି ମନେ କରିଥାନ୍ତି । କିନ୍ତୁ ତାହା ନୁହେ । ଗୌରବତ୍ତୁମାନେ ବ୍ରାହ୍ମଣ ଥିଲେ । ପରାତକେଶରୀଙ୍କ ଦ୍ୱାରା କାନ୍ୟକୁବ୍ଜରୁ ଆନୀତ ଦଶସହସ୍ର ବ୍ରାହ୍ମଣଙ୍କ ମଧ୍ୟରେ ସେ ସେଶ୍ରେଷ୍ଠ ଦାମଦେବ ନନ୍ଦ ଥିଲେ । ସେମାନଙ୍କ ମଧ୍ୟରୁ ଏକ ବ୍ୟକ୍ତି ଗୌରବର ଗର୍ଭଜର୍ଣ୍ଣଙ୍କ ମୂଲ୍ୟ ଜ୍ୟୋତିଷ ଶାସ୍ତ୍ରରେ ପାରଦର୍ଶୀ ଥିବାରୁ ପରାତକେଶରୀ ତାହାଙ୍କ ଜ୍ୟୋତିଷ ଗଣନାରେ ସନ୍ତୁଷ୍ଟ ହୋଇ 'ଗର୍ଭବତ୍ସ' ଏହି ଉପାଧି ଦେଇଥିଲେ । କାଳକ୍ରମେ "ଗର୍ଭବତ୍ସ" ଉପାଧିଟି "ଗୌରବତ୍ତୁ" ଉପାଧିରେ ପରିଣତ ହୋଇଅଛି ।

## ବିନ୍ଦୁସାଗର ।

ଭୁବନେଶ୍ୱର କ୍ଷେତ୍ରକୁ ଆସି ଯାତ୍ରୀଙ୍କୁ ସର୍ବପ୍ରଥମରେ ବିନ୍ଦୁସାଗରରେ ସ୍ନାନ କରିବାକୁ ହୁଏ । ବ୍ରହ୍ମପୁରାଣ ମତରେ ଏହି ବିନ୍ଦୁସରଃ ତୀର୍ଥ ସର୍ବ-ତୀର୍ଥର ଜଳବିନ୍ଦୁ ପ୍ରସୂତ । ଏଥିରେ ସ୍ନାନ କଲେ ସର୍ବତୀର୍ଥସ୍ନାନର ଫଳ ହୁଏ । ପୁଣି ପଦ୍ମପୁରାଣମତରେ ଭଗବାନ ପିନାକପାଣି ସମସ୍ତ ତୀର୍ଥର ଜଳ, ବିନ୍ଦୁ ବିନ୍ଦୁ ନେଇ ଏହି ସରୋବର ନିର୍ମାଣ କରିଅଛନ୍ତି, ସେଥି ପାଇଁ ଏହାର ନାମ ବିନ୍ଦୁସାଗର ହୋଇଅଛି ।

❋ ❋ ❋ ❋

## ଅନନ୍ତ ବାସୁଦେବ ।

ବିନ୍ଦୁସାଗରରେ ସ୍ନାନ କରି ତୀର୍ଥଯାତ୍ରୀଙ୍କୁ ଅନନ୍ତବାସୁଦେବଙ୍କର ମନ୍ଦିରକୁ ଯାଇ ବିଷ୍ଣୁମୂର୍ତ୍ତି ଦର୍ଶନ କରିବାକୁ ହୁଏ ।

* * * *

ଭୁବନେଶ୍ୱରର ପଣ୍ଡାମାନେ କହିଥାନ୍ତି ଯେ ଏହି ଅନନ୍ତବାସୁଦେବଙ୍କ ମନ୍ଦିର ଏକାମ୍ରକାନନର ସର୍ବପ୍ରାଚୀନ ମନ୍ଦିର । ତେଣୁ ସର୍ବ ପ୍ରଥମରେ ଅନନ୍ତବାସୁଦେବମୂର୍ତ୍ତି ଦର୍ଶନ ନ କରି ତୀର୍ଥଯାତ୍ରୀ ଅପର କୌଣସି ଦେବତା ଦର୍ଶନ କରି ପାରନ୍ତି ନାହିଁ । ବାସ୍ତବିକ ଭୁବନେଶ୍ୱରରେ ବର୍ତ୍ତମାନ ଯେଉଁ ସବୁ ମନ୍ଦିର ତୀର୍ଥଯାତ୍ରୀମାନଙ୍କର ଦ୍ରଷ୍ଟବ୍ୟ ବୋଲି ଗଣ୍ୟ ହୋଇ ଥାଏ, ତନ୍ମଧ୍ୟରେ ଏହି ମନ୍ଦିରହିଁ ସର୍ବାପେକ୍ଷା ପ୍ରାଚୀନ ବୋଲି ମନେ ହୁଏ ।

## ଲିଙ୍ଗରାଜ ଭୁବନେଶ୍ୱର ।

ଅନନ୍ତବାସୁଦେବଙ୍କୁ ଦର୍ଶନ କରି ତୀର୍ଥଯାତ୍ରୀଙ୍କୁ ଲିଙ୍ଗରାଜ ଭୁବ-ନେଶ୍ୱରଙ୍କ ଦର୍ଶନକୁ ଯିବାକୁ ହୁଏ । ଭୁବନେଶ୍ୱର କ୍ଷେତ୍ର ମଧ୍ୟରେ ଏହି

ଲିଙ୍ଗରାଜଙ୍କର ମନ୍ଦିର ସର୍ବାପେକ୍ଷା ବୃହତ୍ । ଅପୂର୍ବ ଶିଳ୍ପନୈପୁଣ୍ୟ ଓ ଭାସ୍କର କାର୍ଯ୍ୟ-ସମନ୍ୱିତ ଏହି ମନ୍ଦିର ନିମିତ୍ତ ଅଦ୍ୟ ଭୁବନେଶ୍ୱର କେବଳ ହିନ୍ଦୁ ନିକଟରେ ନୁହେ ଜଗତର ସୁସଭ୍ୟ ଜାତି ମାନଙ୍କର ଦ୍ରଷ୍ଟବ୍ୟ ବୋଲି ବିଘୋଷିତ । * * *

ନାଟମନ୍ଦିରର ପଶ୍ଚିମପାର୍ଶ୍ୱରେ ମୋହନ ଓ ତାହାର ପଶ୍ଚିମରେ ଲିଙ୍ଗରାଜଙ୍କର ଦେଉଳ । ଉଭୟର ଗଠନ ଏକପ୍ରକାର, ନିର୍ମାଣକାଳ ମଧ୍ୟ ଏକ ସମୟର ବୋଲି ସମସ୍ତେ ସ୍ୱୀକାର କରନ୍ତି । ପାଷାଣମୟ ଏହି ମୋହନର ନିର୍ମାଣ କୌଶଳ, ଭାସ୍କର କାର୍ଯ୍ୟ ଓ ଶିଳ୍ପନୈପୁଣ୍ୟ ଦେଖିଲେ ଚମତ୍କୃତ ହେବାକୁ ହୁଏ । ମହାଭାରତରୁ ଦେଖାଯାଏ ଯେ ଦେବଶିଳ୍ପୀ ବିଶ୍ୱକର୍ମା, ଏଠାରେ ତପସ୍ୟା କରିଥିଲେ । ବାସ୍ତବିକ ଏହି ନୟନମୋହନ ମୋହନ ଯେପରି ସେହି ଦେବଶିଳ୍ପୀର ତପସ୍ୟା ପ୍ରଭାବରେ ନିର୍ମିତ ହୋଇଅଛି । ଅନନ୍ତ ପ୍ରତିମୂର୍ତ୍ତିଠାରୁ ସୁବୃହତ୍ ପାଷାଣ-ପ୍ରତିମା କି ଅପରୂପ କୌଶଳରେ ଗଠିତ ହୋଇଅଛି ! ମାନବ ଜୀବନର ସଂସାର ଚିତ୍ର ସୁସ୍ପଷ୍ଟ ପ୍ରଦର୍ଶିତ ହୋଇଅଛି । ପ୍ରମୋଦ-ବାସର ଆନନ୍ଦମୟ ଚିତ୍ର କି ସୁନ୍ଦର ସନ୍ନିବିଷ୍ଟ ହୋଇଅଛି ! ପ୍ରକୃତିର କଳ୍ପିତ ଲୀଳାଭୂମି ଯେପରି ଶିଳ୍ପୀର କୌଶଳରେ ସଜୀବତା ଲାଭ କରିଅଛି । ପୁଣି ତାହା ସଙ୍ଗେ ଅମାନୁଷୀ ଓ କବିକଳ୍ପିତ ଅସ୍ୱାଭାବିକ ଦୃଶ୍ୟର ମଧ୍ୟ ଅଭାବ ନାହିଁ; ଯେ ଦେଖିଅଛି ସେହି ବୁଝିଅଛି । ଶତପୃଷ୍ଠା ଲେଖିଲେ ମଧ୍ୟ ତାହାର ପ୍ରକୃତ ବର୍ଣ୍ଣନା କରିବାକୁ ଲେଖନୀ ଅସମର୍ଥ ।

* * * *

## ମୁକ୍ତେଶ୍ୱର ।

ସତାଙ୍କଣୀ ଦେଉଳର ୭୦୦ ହାତ ଦୂରରେ ଗୋଟିଏ ଆମ୍ରବନ ଥିଲା ଏବଂ ଏଠାରେ କେତେକ ଜଣ ସିଦ୍ଧପୁରୁଷ ବାସ କରୁଥିଲେ ।

ସେଥିପାଇଁ ଏ ସ୍ଥାନ ସିଦ୍ଧାରଣ୍ୟ ନାମରେ ଖ୍ୟାତ ହୋଇଥିଲା । ଏଠାରେ ସ୍ୱଚ୍ଛଜଳ ବହୁ ଶୀତଳ ପ୍ରସ୍ରବଣ ରହିଅଛି । ସୁତରାଂ ଏପରି ମନୋରମ ସ୍ଥାନରେ ଶ୍ରେଷ୍ଠ ଦେବାଳୟ କାହିଁକି ନିର୍ମିତ ନ ହେବ ? ତେଣୁ ଦେଖିପାରୁଅଛୁଁ, ଉତ୍କଳର ଭୂପତିମାନେ ଭିନ୍ନ ଭିନ୍ନ ସମୟରେ ଏଠାରେ ମୁକ୍ତେଶ୍ୱର, କେଦାରେଶ୍ୱର, ସିଦ୍ଧେଶ୍ୱର ଓ ପରଶୁରାମେଶ୍ୱର ପ୍ରଭୃତି ସୌଧାବଳୀ ପ୍ରତିଷ୍ଠା କରି ଚିରସ୍ଥାୟୀ କୀର୍ତ୍ତି ରଖି ଯାଇ ଅଛନ୍ତି । ଏଠାରେ ଯେତେଗୁଡ଼ିଏ ଦେବାଳୟ ଅଛି ସେମାନଙ୍କ-ମଧ୍ୟରେ ମୁକ୍ତେଶ୍ୱର ବା ମୁକ୍ତୀଶ୍ୱର ଭୁଲିବାର ନୁହେଁ । ଉତ୍କଳଶିଳ୍ପୀଗଣ ଏହି ମନ୍ଦିରରେ ସେମାନଙ୍କର ଗୁଣଗ୍ରାମର ଚରମ ଦେଖାଇ ଯାଇ-ଅଛନ୍ତି । * * * ଦେଉଳର ବାହ୍ୟ ଅଂଶର ରଚନା ବିନ୍ୟାସ, ସ୍ଥାନ ନିର୍ବାଚନ, ପରିମାଣ ପାରିପାଟ୍ୟ ଦେଖିଲେ ଶିଳ୍ପୀର ଅସାଧାରଣ କୌଶଳର ପରିଚୟ ମିଳେ । ଯେଉଁଠାରେ ଯାହା ଶୋଭାପାଏ ସେଠାରେ ତାହା ସନ୍ନିବେଷ୍ଟ । ଯେଉଁଠାରେ ଯାହା ରଖିଲେ ସମସ୍ତଙ୍କର ନୟନମନ ଆକର୍ଷଣ କରିପାରେ ଶିଳ୍ପୀ ଯେପରି ଦୈବଶକ୍ତି ପ୍ରଭାବରେ ପଥର ନେଇ ସେହି ଖେଳ ଖେଳି-ଅଛି । କି ସାଜ ସଜ୍ଜାର ବାହାର ! କେଉଁଠାରେ ମସ୍ତକରେ ସ୍ତବକ ପୁଷ୍ପଗୁଚ୍ଛ, କେଉଁଠାରେ ସୁମଣ୍ଡିତ ଓ ସୁକେଶସଜ୍ଜିତ ନରନାରୀ ମୂର୍ତ୍ତି, କେଉଁଠାରେ ଗଜବାସିନୀ ଦେବୀମୂର୍ତ୍ତି ଅସିଚର୍ମାବୃତ ଅସୁର ବିନାଶ କରିବାକୁ ଉଦ୍ୟତା, କେଉଁଠାରେ ଭଗବତୀ ଅନ୍ନପୂର୍ଣ୍ଣା ଭୋଳାନାଥଙ୍କୁ ଅନ୍ନଭିକ୍ଷାଦାନରେ ନିରତା, କେଉଁଠାରେ ପଞ୍ଚଶିର ଭୁଜଙ୍ଗର ଛତ୍ର-ତଳରେ ଅର୍ଦ୍ଧସର୍ପାକୃତି ରମଣୀ, କେଉଁଠାରେ ସିଂହ ଗଜର ଉପରେ, ପୁଣି କେଉଁଠାରେ ସିଂହ ସହ ଗଜର ଯୁଦ୍ଧ, କେଉଁଠାରେ ଗଜମୁଣ୍ଡରେ ସିଂହ ଅବସ୍ଥିତ, ନର୍ତ୍ତକୀମାନଙ୍କର ଭାବଭଙ୍ଗୀଯୁକ୍ତ ନାନା ଦୃଶ୍ୟ — କେହି ନାଚୁଅଛି, କେହି ବା ମୃଦଙ୍ଗ, ବୀଣା, ଅଥବା ତୁମ୍ବୀ ବଜାଉ

ଅଛୁ, କେହ ପ୍ରେମାବେଶରେ ପ୍ରିୟତମକୁ ଆଲିଙ୍ଗନ କରୁଅଛୁ—କୌଣସି ବଳିଷ୍ଠ ବୃଷପୃଷ୍ଠେ ଭର ଦେଇଅଛୁ, ସିଦ୍ଧର୍ଷିମାନେ ଶିବପୂଜାରେ ନିଯୁକ୍ତ ଅଛନ୍ତି, ଗୁରୁ ଶିଷ୍ୟଙ୍କୁ ଉପଦେଶ ଦେଉଅଛନ୍ତି, କେହବା ଚୌପାଢ଼ିରେ ରକ୍ଷିତ ପୋଥି ପଢ଼ୁଅଛନ୍ତି, ଛତ୍ରତଳରେ ଯେପରି କୌଣସି ନାରୀ ଠିଆ ହୋଇ ରହିଅଛି, କୌଣସି ନାରୀ ପୁଣି ଦ୍ୱାର-ଦେଶରେ ଶୁକପକ୍ଷୀ ହାତରେ ଧରି ଠିଆ ହୋଇଅଛି, କୌଣସି ରମଣୀ ବୃକ୍ଷ ତଳରେ କେହି ବା କୂର୍ମ ଉପରେ ଶୋଇ ପାରିଅଛି । ରମଣୀ-ମାନଙ୍କର କେଶପାଶର କେଡ଼େ ବାହାର, ମସ୍ତକର ବା କେତେ ଅପରୂପ ସଜ :—ଫୁଲର ସଜ, ଲତାପତ୍ରର କାର୍ଯ୍ୟ, ବସ୍ତ୍ରର କାର୍ଯ୍ୟ କି ସୁନ୍ଦର, କିଣ କହିବି ? କିଣ ଲେଖିବି , ବାସ୍ତବିକ ମନ୍ଦିରର ଶିଳ୍ପ-ନୈପୁଣ୍ୟ ଲେଖନୀଦ୍ୱାରା ବ୍ୟକ୍ତ କରିବା ଅସମ୍ଭବ, ଯେ ଦେଖିଅଛି, ସେ ଜାଣିଅଛି, ସେ ଭୁଲିଅଛି, ଉତ୍କଳଶିଳ୍ପର ସହସ୍ର ଧନ୍ୟବାଦ ନ କରି ଦ୍ରଷ୍ଟା କେବେହେଁ ଫେରି ପାରନ୍ତି ନାହିଁ । ଏତେ କାରିଗରୀ ଏତେ ଶିଳ୍ପଚାତୁର୍ଯ୍ୟ ! ସଙ୍ଗେ ସଙ୍ଗେ ପ୍ରକୃତି ମଧ୍ୟ ଯେପରି ଅନୁକୂଳ । ମନ୍ଦିର ମଧ୍ୟରେ ଯେଉଁ ଯେଉଁଠାରେ ଜଳ ରହିଲେ ଭଲ ହୁଏ, ସେହି ସେହି ସ୍ଥାନରେ ସ୍ୱଭାବ ଜାତ ପ୍ରସ୍ରବଣ ଶିଳ୍ପୀର କୌଶଳରେ ଗୃହାଭ୍ୟନ୍ତରର ଅନ୍ତର୍ଭୁକ୍ତ ରହିଅଛି, ବାସ୍ତବିକ ଏହି ନିର୍ଜନ ସିଦ୍ଧାରଣ୍ୟରେ ମୁକ୍ତିଦାତା ମୁକ୍ତେଶ୍ୱରଙ୍କର ମନ୍ଦିରକୁ ଆସିଲେ ଆଉ ମନ ସଂସାରକୁ ଫେରିବାକୁ ଚାହେଁ ନାହିଁ । ଇଚ୍ଛା ହୁଏ ଏଠାରେ ଚିରକାଳ ଥାଆନ୍ତି, ଆଉ ସେହି ଭୁବନଭାବନ ଭବାନୀପତିଙ୍କର ଉଦ୍ଦେଶ୍ୟରେ ମନପ୍ରାଣ ସମର୍ପଣ କରନ୍ତି ।

---

# ଭୁବନେଶ୍ୱରର ପୌରାଣିକ ବିବରଣ ।

କୈଳାସବାସୀ ଶିବ ବହୁବର୍ଷ କାଶୀରେ ବାସକଲାପରେ ସେ ସ୍ଥାନ ଜନକୋଳାହଳ ପୂର୍ଣ୍ଣ ହେବାରୁ ଏକାନ୍ତକାନନରେ ତପସ୍ୟା ସ୍ଥଳ ନିର୍ବାଚନ କରି ଗୁପ୍ତଭାବରେ ରହିଲେ । ଏଣୁ ଏହାର ନାମ ଗୁପ୍ତକାଶୀ ହେଲା । ଦୁର୍ଗା ଏହା ବୁଝିପାରି ସେଠାକୁ ଆସି ଗୋପାଳିନୀ ବେଶ ଧାରଣ କରି ଶିବପୂଜାରେ ନିଯୋଜିତ ରହିଲେ । ଏହି ବନରେ କୃତ୍ତି ଓ ବାସ ନାମରେ ଦୁଇ ରାକ୍ଷସ ବାସ କରୁଥିଲେ, ଏକଦା ସେ ଦୁହେଁ ଗୋପାଳିନୀଙ୍କ ରୂପରେ ମୋହିତ ହୋଇ ତାହାଙ୍କୁ ବିବାହ କରିବାକୁ ଇଚ୍ଛା କଲେ । ଗୋପାଳିନୀ ରାକ୍ଷସଦ୍ୱୟଙ୍କର ଅଭିପ୍ରାୟ ଜାଣି ପାରି କହିଲେ, "ତୁମ୍ଭେ ଦୁହେଁ ଆମ୍ଭଙ୍କୁ କାନ୍ଧରେ ବସାଇ ଏହି କ୍ଷେତ୍ର ଚତୁପାର୍ଶ୍ୱ ବୁଲାଇ ଆଣି ପାରିଲେ ଆମ୍ଭେ ତୁମ୍ଭ ଦୁହିଁଙ୍କୁ ପତିରୂପରେ ବରଣ କରିବୁଁ" । ରାକ୍ଷସଦ୍ୱୟ ଉକ୍ତ ପ୍ରସ୍ତାବରେ ସ୍ୱୀକୃତ ହେବାରୁ ଗୋପାଳିନୀ ଉଭୟଙ୍କ କାନ୍ଧରେ ପାଦଦେଇ ଦଣ୍ଡାୟମାନ ହେଲେ । ତଦବସ୍ଥାରେ ରାକ୍ଷସଦ୍ୱୟ କିଛିଦୂର ଅଗ୍ରସର ହୁଅନ୍ତେ ଦେବୀଙ୍କ ଭାରରେ ପାତାଳଗାମୀ ହେଲେ । ଗୋପାଳିନୀ ଏହିପରି ରାକ୍ଷସଦ୍ୱୟଙ୍କୁ ବିନାଶକରି ପରିଶ୍ରାନ୍ତ ହୋଇ ଶୟନ କରିଅଛନ୍ତି, ଏମନ୍ତ ସମୟରେ ମହାଦେବ ଅନୁସନ୍ଧାନପୂର୍ବକ ପାର୍ବତୀଙ୍କୁ ତଦବସ୍ଥ ଦେଖି ତାଙ୍କ ପାଦତଳେ ବସିବା ମାତ୍ରକେ ପାର୍ବତୀ କହିଲେ "ମୋତେ ଅତ୍ୟନ୍ତ ତୃଷା ହେଉଅଛି କଣ୍ଠତ, ଜଳ ଦିଅ" । ତହୁଁ ମହାଦେବ ତ୍ରିଶୂଳଦ୍ୱାରା ବିନ୍ଦୁସାଗର ଖନନ କରି ବୃଷଭଦ୍ୱାରା ସର୍ବତୀର୍ଥରୁ ବିନ୍ଦୁ ଜଳ ଆଣାଇ ବ୍ରହ୍ମାଙ୍କଦ୍ୱାରା ପୁଷ୍କରିଣୀ ପ୍ରତିଷ୍ଠା କରାଇଲାପରେ ସେହିଜଳରେ ଦେବୀଙ୍କର ତୃଷା ନିବାରଣ କଲେ । ସେହିଦିନଠାରୁ ଉକ୍ତ ପୁଷ୍କରିଣୀର ନାମ ବିନ୍ଦୁସାଗର ହେଲା । ପରେ ଅନ୍ୟାନ୍ୟ ଦେବ-

ଦେବୀ ଏ ସ୍ଥାନରେ ଏକତ୍ରିତ ହେଲେ । ମହାଦେବ ସେହି ଦେବ-ଦେବୀଙ୍କ ସହିତ ବିଶ୍ୱକର୍ମାଙ୍କଦ୍ୱାରା ଏକରାତ୍ର ମଧ୍ୟରେ ଏକୋନ-କୋଟି ମନ୍ଦିର ନିର୍ମାଣ କରାଇଲେ । ଏସ୍ଥାନର ବିସ୍ତୃତ ପୌରାଣିକ ବିବରଣ ଜାଣିବାକୁ ଇଚ୍ଛାକଲେ ~~ଏକାମ୍ରପୁରାଣ, ସ୍ୱର୍ଣ୍ଣାଦ୍ରିମହୋଦୟ~~, କପିଳ ସଂହିତା ପ୍ରଭୃତି ପଢ଼ିବା ଉଚିତ ।

---

## ଭୁବନେଶ୍ୱର ଆଦ୍ୟକ୍ଷେତ୍ର ।

ଉତ୍କଳଖଣ୍ଡ ପାଠକଲେ ଜଣାଯାଏ, ଇନ୍ଦ୍ରଦ୍ୟୁମ୍ନ ମହାରାଜା ପ୍ରଥମରେ ଏକାମ୍ରକ୍ଷେତ୍ରରେ ଶ୍ରୀଲିଙ୍ଗରାଜଦେବଙ୍କୁ ପୂଜାକରି ତାଙ୍କର ବରରେ ଜଗନ୍ନାଥଦେବଙ୍କ ଦର୍ଶନ ପାଇଥିଲେ । ସେହିଦିନଠାରୁ ଏହା ଆଦ୍ୟକ୍ଷେତ୍ର ନାମରେ ଅଭିହିତ ହୋଇ ପ୍ରତ୍ୟେକ ଯାତ୍ରୀର ପ୍ରଥମରେ ଶ୍ରୀଲିଙ୍ଗରାଜଙ୍କ ଦର୍ଶନ ବିଧେୟ ବୋଲି ନିର୍ଦ୍ଦିଷ୍ଟ ହୋଇଅଛି । ଶ୍ରୀଚୈତନ୍ୟ ମହାପ୍ରଭୁ ମଧ୍ୟ ପୁରୀ ଯିବା ପୂର୍ବରୁ ଭୁବନେଶ୍ୱର ଦେଖି ଯାଇଥିଲେ । ଯେଉଁମାନେ ଏହି ବିଧି ଲଙ୍ଘନକରି ପୁରୀ ଦର୍ଶନାନନ୍ତର ଭୁବନେଶ୍ୱର ଦେଖନ୍ତି ବା ଏକାବେଳକେ ଭୁବନେଶ୍ୱରକୁ ପରିତ୍ୟାଗ କରନ୍ତି ସେମାନେ ଜଗନ୍ନାଥ ଦର୍ଶନର ସମ୍ପୂର୍ଣ୍ଣ ଫଳ ପାଇପାରନ୍ତି ନାହିଁ । ସୁତରାଂ ପ୍ରତ୍ୟେକ ଧର୍ମାର୍ଥୀ ଯାତ୍ରୀଙ୍କର ପ୍ରଥମରେ ଭୁବନେଶ୍ୱରସ୍ଥ ଶ୍ରୀଲିଙ୍ଗରାଜ ମହାପ୍ରଭୁଙ୍କୁ ଦର୍ଶନ କରି ପରେ ପୁରୀସ୍ଥ ଜଗନ୍ନାଥ ମହାପ୍ରଭୁଙ୍କ ଦର୍ଶନ କରିବାକୁ ଯିବା କର୍ତ୍ତବ୍ୟ ।

---

## ଶ୍ରୀଲିଙ୍ଗରାଜଙ୍କର ମହାପ୍ରସାଦ ।

ଶୈବ, ବୈଷ୍ଣବ ପ୍ରଭୃତି ସମସ୍ତ ସମ୍ପ୍ରଦାୟର ହିନ୍ଦୁମାନେ ଶ୍ରୀଲିଙ୍ଗରାଜ ମହାପ୍ରଭୁଙ୍କ ହରିହରଙ୍କର ଅଭେଦମୂର୍ତ୍ତି ଜ୍ଞାନ କରି ପୂଜା କରନ୍ତି ଏବଂ ତାହାଙ୍କର ମହାପ୍ରସାଦକୁ ପରମ ଭକ୍ତିରେ ଜାତିଗତ ପାର୍ଥକ୍ୟ ତ୍ୟାଗ କରି ଏକତ୍ର ସେବନ କରନ୍ତି । ଭୁବନେଶ୍ୱରର ମହାପ୍ରସାଦ ସମ୍ବନ୍ଧରେ ବିଶ୍ୱକୋଷରେ ଲେଖାଅଛି ;—ଜଗନ୍ନାଥଙ୍କ ପରି ଏହାଙ୍କର ମଧ୍ୟ ନିତ୍ୟ ଅନ୍ନଭୋଗର ବନ୍ଦୋବସ୍ତ ଅଛି । ଅନ୍ୟ ସ୍ଥାନର ଶିବନିର୍ମାଲ୍ୟ ଅଗ୍ରାହ୍ୟ, କିନ୍ତୁ ଭୁବନେଶ୍ୱରଙ୍କର ନିର୍ମାଲ୍ୟ କେବେ କେହି ପରିତ୍ୟାଗ କରନ୍ତି ନାହିଁ । ଯାତ୍ରୀମାନେ ଏହା ପରମଭକ୍ତିର ସହିତ ଗ୍ରହଣ କରିଥାନ୍ତି । ଯେପରି ଜଗନ୍ନାଥଙ୍କର ଅନ୍ନ ଭୋଗ ଆଚଣ୍ଡାଳ ବ୍ରାହ୍ମଣ ସମସ୍ତେ ଏକତ୍ର ବସି ସେବା କରି ପାରନ୍ତି, ଶ୍ରୀଲିଙ୍ଗରାଜ ମହାପ୍ରଭୁଙ୍କ ଭୋଗ ମଧ୍ୟ ସେହିପରି ବ୍ରାହ୍ମଣ ଶୂଦ୍ର ସମସ୍ତ ଜାତିଙ୍କୁ ଏକତ୍ର ସେବା କରିବାର ଦେଖା ଯାଏ । ନୀଚଜାତି-ସ୍ପୃଷ୍ଟ ହେଲେ ମଧ୍ୟ ଲିଙ୍ଗରାଜଙ୍କ ଭୋଗ କେବେହେଁ ଅପବିତ୍ର ହୁଏ ନାହିଁ ।

ସ୍ୱର୍ଣ୍ଣାଦ୍ରିମହୋଦୟରେ ଲେଖା ଅଛି :—

ଏତଲ୍ଲିଙ୍ଗଂ ନ ଦେବାଖ୍ୟ ନ ରୁଦ୍ରୋ ନୈବ ମାଧବଃ ।
ଅର୍ଦ୍ଧନାରୀହାପୂର୍ବଂ ଯତ୍ତୁ ତଦ୍ଦେଂ ଲିଙ୍ଗମବ୍ୟକ୍ତ ।
ଅଗ୍ରାହ୍ୟଂ ଲିଙ୍ଗନୈବେଦ୍ୟଂ ନ ଲିଙ୍ଗଂ ଭୁବନେଶ୍ୱରଃ ।
ତସ୍ମାତ୍ତୁ ପୁଣ୍ୟୋପଭୁକ୍ତମ୍ ହି ନୈବେଦ୍ୟଂ ସୁରାସୁରୈଃ ।

ଲିଙ୍ଗରାଜ ମହାପ୍ରଭୁ କେବଳ ଶିବ ବା ବିଷ୍ଣୁ ନୁହନ୍ତି । ଏ ହରିହର ମୂର୍ତ୍ତି ଅଟନ୍ତି । ଲିଙ୍ଗନୈବେଦ୍ୟ ଅଗ୍ରାହ୍ୟ ହେଲେହେଁ ଭୁବନେଶ୍ୱର

ଲିଙ୍ଗ ନ ହୋଇ ହରିହର ମୂର୍ତ୍ତି ହୋଇଥିବାରୁ ତାହାଙ୍କର ନୈବେଦ୍ୟ ସୁଗ୍ରସୁକ ସନ୍ଧାନ ସମସ୍ତେ ଗ୍ରହଣ କରନ୍ତି ।

ଶ୍ରୀଚୈତନ୍ୟମଙ୍ଗଳ ଗ୍ରନ୍ଥର ମଧ୍ୟଖଣ୍ଡର ଶେଷଭାଗ ଏବଂ ଶ୍ରୀଚୈତନ୍ୟଭାଗବତର ଅନ୍ତ୍ୟଖଣ୍ଡ ୨ୟ ଅଧ୍ୟାୟ ପାଠକଲେ ଜଣାଯାଏ ଯେ ବୈଷ୍ଣବଧର୍ମ ପ୍ରଚାରକ ଶ୍ରୀଭଗବଦବତାର ଶ୍ରୀଚୈତନ୍ୟଦେବ ସ୍ୱୟଂ ପାରିଷଦମାନଙ୍କ ସହ ଭୁବନେଶ୍ୱରରେ ଉପସ୍ଥିତ ହୋଇ ଶ୍ରୀଲିଙ୍ଗରାଜ ମହାପ୍ରଭୁଙ୍କୁ ଏବଂ ଅନ୍ୟାନ୍ୟ ଶିବଙ୍କୁ ଦର୍ଶନ କରି ପରମଭକ୍ତିସହ ଶ୍ରୀଲିଙ୍ଗରାଜଙ୍କର ମହାପ୍ରସାଦ ସେବନ କରିଥିଲେ ଏବଂ ସଙ୍ଗୀମାନଙ୍କୁ ସେବନ କରିବାକୁ ଉପଦେଶ ଦେଇଥିଲେ ।

## ଅଷ୍ଟମୂର୍ତ୍ତି ଦର୍ଶନ ବିଧି ।

ଅତିଗୁହ୍ୟତମଂ ଶ୍ରେଷ୍ଠଂ ଦେବାନାମପି ଦୁର୍ଲଭମ୍ ।
ସର୍ବପାପହରଂ ପୁଣ୍ୟଂ କ୍ଷେତ୍ରଂ ପରମଦୁର୍ଲଭମ୍ ।
ଲକ୍ଷକୋଟିସମାଯୁକ୍ତଂ କାଞ୍ଚନାଦଧିକଂ ଶୁଭମ୍ ।
ଏକାମ୍ରେକେତି ବିଖ୍ୟାତଂ ତୀର୍ଥକୋଟିବିଭୂଷିତମ୍ ।

ଅତି ଗୁହ୍ୟତମ, ଶ୍ରେଷ୍ଠ, ଦେବଦୁର୍ଲଭ, ସର୍ବପାପହର, ପରମ ଦୁର୍ଲଭ, ପବିତ୍ର, ଲକ୍ଷକୋଟି ଶମାଯୁକ୍ତ, କାଞ୍ଚନଗଣରୁ ଅଧିକ ଶୁଭପ୍ରଦ, ତୀର୍ଥକୋଟିବିଭୂଷିତ ଏହି କ୍ଷେତ୍ର ଏକାମ୍ରକ୍ଷେତ୍ର ନାମରେ ବିଖ୍ୟାତ ଅଟେ ।

ଆଦୌ ବିନ୍ଦୁହ୍ରଦେ ସ୍ନାତ୍ୱା ଦୃଷ୍ଟ୍ୱା ଶ୍ରୀପୁରୁଷୋତ୍ତମଂ ।
ଦେବୀ ପଦହରାଂ ଦୃଷ୍ଟ୍ୱା ତତସ୍ତୀର୍ଥେଶ୍ୱରଂ ବ୍ରଜେତ୍ ।
ସିଂହଦ୍ୱାରଂ ନମସ୍କୃତ୍ୟ ପ୍ରବିଶେନ୍ମନ୍ଦିରଂ ତଥା ।
ବନାପୁକଂ ପ୍ରଥମତୋ ଦେବୀଂ ସ୍କନ୍ଦଂ ବୃଷଂ ତଥା ।
ଗଣପତିଂ କଳ୍ପବୃକ୍ଷଂ ସାବିତ୍ରୀଂ ଦେବଦେବକଂ ।
ଅଷ୍ଟମୂର୍ତ୍ତିକ୍ରମେଣୈବ ଦର୍ଶନଂ କୁରୁତେ ତୁ ଯଃ ।
ସୋଽଶ୍ୱମେଧସହସ୍ରସ୍ୟ ଫଳମାପ୍ନୋତି ମାନବଃ ।

ପ୍ରଥମେ ବିନ୍ଦୁହ୍ରଦରେ ସ୍ନାନ କରି ଶ୍ରୀପୁରୁଷୋତ୍ତମ ଏବଂ ଦେବୀ ପଦହରଙ୍କୁ, ଦେଖି ତୀର୍ଥେଶ୍ୱରଙ୍କ ନିକଟକୁ ଯିବ । ତାହାପରେ ସିଂହଦ୍ୱାରକୁ ନମସ୍କାର କରି ମନ୍ଦିର ଅଭ୍ୟନ୍ତରରେ ପ୍ରବେଶ କରିବ । ପ୍ରଥମତଃ ବନାପୁକ ପରେ ଦେବୀ, ସ୍କନ୍ଦ, ବୃଷ, ଗଣପତି, କଳ୍ପବୃକ୍ଷ, ସାବିତ୍ରୀ ଏବଂ ଦେବଦେବଙ୍କୁ ଦର୍ଶନ କରିବ । ଯେ ଏହି କ୍ରମରେ ଅଷ୍ଟମୂର୍ତ୍ତି ଦର୍ଶନ କରେ ସେ ସହସ୍ର ଅଶ୍ୱମେଧର ଫଳ ପାଏ ।

## ବିନ୍ଦୁସାଗରଙ୍କ ପ୍ରାର୍ଥନା ।

ତ୍ୱଂ ରାଜା ସର୍ବତୀର୍ଥାନାଂ ତ୍ୱମେବ ଜଗତଃ ପିତା ।
ଯାଚିତଂ ତୀର୍ଥ ମେ ଦେହି ସର୍ବପାପପ୍ରମୋଚନମ୍ ।

ହେ ବିନ୍ଦୁତୀର୍ଥ ! ତୁମ୍ଭେ ସର୍ବତୀର୍ଥମାନଙ୍କର ରାଜା, ତୁମ୍ଭେ ଜଗତର ପିତା, ମୁଁ ପ୍ରାର୍ଥନା କରେଁ ସର୍ବପାପ ପ୍ରମୋଚନ ଫଳ ମୋତେ ଦିଅ ।

---

## ଅପରାଧ କ୍ଷମାଭିକ୍ଷା ।

ତୀର୍ଥରାଜ ନମସ୍ତୁଭ୍ୟଂ ସର୍ବ୍ବତୀର୍ଥାଭିବନ୍ଦିତଂ ।
ପଦ୍ଭ୍ୟାଂ ସ୍ପୃଶାମି ତ୍ୱଦପଃ ଅପରାଧାନ୍ କ୍ଷମସ୍ୱ ମେ ।

ହେ ସର୍ବ୍ବତୀର୍ଥ ଅଭିବନ୍ଦିତ ତୀର୍ଥରାଜ ! ତୁମ୍ଭଙ୍କୁ ନମସ୍କାର । ମୁଁ ତୁମ୍ଭର ଜଳକୁ ପାଦଦ୍ୱାରା ସ୍ପର୍ଶ କରିବି, ମୋର ଏହି ଅପରାଧକୁ କ୍ଷମାକର ।

---

## ସ୍ନାନ ପୂର୍ବରୁ ବାସୁଦେବଙ୍କୁ ପ୍ରାର୍ଥନା ।

ବାସୁଦେବ ନମସ୍କୃତ୍ୟ ତ୍ୱନନ୍ତଂ ବିଶ୍ୱତୋମୁଖଂ ।
ସ୍ନାତୁମିଚ୍ଛାମି ଦେବେଶ ସମ୍ୟକ୍ ସିଦ୍ଧିଂ ପ୍ରୟଚ୍ଛ ମେ ॥

ବିଶ୍ୱତଃ ମୁଖ ଅନନ୍ତବାସୁଦେବଙ୍କୁ ନମସ୍କାର କରି ସ୍ନାନ କରିବାକୁ ଇଚ୍ଛା କରୁଅଛି, ମୋତେ ସମ୍ୟକ୍ ସିଦ୍ଧି ପ୍ରଦାନ କର ।

---

## ସ୍ନାନବେଳେ ବିନ୍ଦୁସାଗରଙ୍କୁ ପ୍ରାର୍ଥନା ।

ବିନ୍ଦୁହ୍ରଦ ନମସ୍ତୁଭ୍ୟଂ ମହାଦେବେନ ନିର୍ମ୍ମିତମ୍ ।
ବିଶ୍ୱବନ୍ଦ୍ୟ ଜଗଦ୍ଧାମ ମଜ୍ଜୟାମି ତବାମ୍ବୁସି ॥

ମହାଦେବଙ୍କଦ୍ୱାରା ନିର୍ମିତ, ଜଗତ୍ପୂଜ୍ୟ, ସଂସାରର ଅଣ୍ଡପୃଷ୍ଠଳ ହେ ବିନ୍ଦୁହ୍ରଦ ! ତୁମ୍ଭଙ୍କୁ ନମସ୍କାର । ମୁଁ ତୁମ୍ଭ ଜଳରେ ଅବଗାହନ କରୁଅଛି ।

---

ବିନ୍ଦୁସାଗରରେ ସ୍ନାନର ଫଳ ।

ଏଷ ବିଶ୍ୱେଶ୍ୱରୋ ଦେବ ଏଷୈବ ମଣିକର୍ଣ୍ଣିକା ।
କଲାବନ୍ତର୍ହିତା କାଶୀ ମୁକ୍ତିରତ୍ର ନ ସଂଶୟଃ ।

ଏହି ଲିଙ୍ଗରାଜ ବିଶ୍ୱେଶ୍ୱରଦେବ, ଏହି ବିନ୍ଦୁହ୍ରଦ ମଣିକର୍ଣ୍ଣିକା, ଏହି ଭୁବନେଶ୍ୱର କ୍ଷେତ୍ର କଳିକାଳର ଗୁପ୍ତ କାଶୀ ; ସୁତରାଂ ଏଠାରେ ମୁକ୍ତିରେ କୌଣସି ସନ୍ଦେହ ନାହିଁ ।

---

ଗରୁଡ଼ଙ୍କୁ ପ୍ରାର୍ଥନା ।

ବୈନତେୟ ନମସ୍ତେଽସ୍ତୁ ନମସ୍ତେ କଶ୍ୟପାତ୍ମଜ ।
ବିଷ୍ଣୁବାହ ନମସ୍ତେଽସ୍ତୁ ପକ୍ଷିରାଜ ନମୋଽସ୍ତୁତେ ।

ବିନତା ପୁତ୍ରଙ୍କୁ ନମସ୍କାର । କଶ୍ୟପଙ୍କ ପୁତ୍ରଙ୍କୁ ନମସ୍କାର । ବିଷ୍ଣୁବାହନଙ୍କୁ ନମସ୍କାର । ଗରୁଡ଼ଙ୍କୁ ନମସ୍କାର ।

---

ବାସୁଦେବଙ୍କୁ ପ୍ରାର୍ଥନା ।

ଶଙ୍ଖଚକ୍ରାଙ୍କିତଭୁଜଂ ବସିନୈକାମ୍ରମଧ୍ୟଗଂ ।
କଞ୍ଜାକ୍ଷଂ ପୀତବସନଂ ନୀରଦାଭଂ ହରିଂ ଭଜେ ।

ଶଙ୍ଖଚକ୍ରଧାରୀ, ଏକାମ୍ରକାନନରେ ଅବସ୍ଥିତ, ପଦ୍ମପଲାଶଲୋଚନ, ପୀତବସନ ଘନଶ୍ୟାମ ହରିଙ୍କୁ ଭଜନ କରୁଅଛି ।

## ଭବାନୀଶଙ୍କରଙ୍କ ପ୍ରାର୍ଥନା ।

ଭବାନୀଶଙ୍କରୌ ବନ୍ଦେ ଭବଦୁଃଖହରୌ ପରୌ ।
ପିତାମହୌ ଚ ଦେବାନାଂ ପିତରୌ କରୁଣାକରୌ ॥

ଦେବତାମାନଙ୍କର ପିତାମହ, ଭବଦୁଃଖହର, ପରମ କରୁଣାକର ପିତାମାତା ଭବାନୀଶଙ୍କରଙ୍କୁ ନମସ୍କାର ।

## ତୀର୍ଥେଶ୍ୱରଙ୍କୁ ପ୍ରାର୍ଥନା ।

ତୀର୍ଥେଶ୍ୱର ନମସ୍ତେଽସ୍ତୁ ତୀର୍ଥସ୍ନାନଫଳପ୍ରଦ ।
ପୁତ୍ରଂ ପୌତ୍ରଂ ପ୍ରପୌତ୍ରଂ ଚ ଦେହି ମେ ବିନ୍ଦୁବ୍ରତ ॥

ତୀର୍ଥସ୍ନାନ ଫଳପ୍ରଦ ହେ ତୀର୍ଥେଶ୍ୱର ! ତୁମ୍ଭକୁ ନମସ୍କାର । ହେ ବିନ୍ଦୁବ୍ରତ ! ମୋତେ ପୁତ୍ର, ପୌତ୍ର ଏବଂ ପ୍ରପୌତ୍ର ଦିଅ ।

## ଗଣେଶଙ୍କୁ ପ୍ରାର୍ଥନା ।

ବିଘ୍ନେଶ୍ୱର ନମସ୍ତେଽସ୍ତୁ ସର୍ବସିଦ୍ଧିପ୍ରଦାୟିନେ ।
ଅବିଘ୍ନଂ ଭୁବନେଶସ୍ୟ ଦର୍ଶନଂ ଦେହି ମେ ପ୍ରଭୋ ॥

ହେ ସର୍ବସିଦ୍ଧିପ୍ରଦ ବିଘ୍ନେଶ୍ୱର ! ତୁମ୍ଭକୁ ନମସ୍କାର । ହେ ପ୍ରଭୋ ! ଭୁବନେଶ୍ୱରଙ୍କର ଦର୍ଶନ ଅବିଘ୍ନରେ ଦିଅ ।

## ଗୋପାଳଙ୍କୁ ପ୍ରାର୍ଥନା ।

ଗୋପାଳକ ନମସ୍ତେଽସ୍ତୁ କୁତ୍ରବାସବମର୍ଦ୍ଦନ ।
ପୁତ୍ରଂ ପୌତ୍ରଂ ଶ୍ରିୟଂ କୀର୍ତ୍ତିଂ ଦେହି ମେ ଭୁବନେଶ୍ୱର ।

ହେ କୁତ୍ରବାସବମର୍ଦ୍ଦନ ଗୋପାଳକ ! ତୁମ୍ଭକୁ ନମସ୍କାର । ହେ ଭୁବନେଶ୍ୱର ! ମୋତେ ପୁତ୍ର, ପୌତ୍ର, ସମ୍ପତ୍ତି ଏବଂ କୀର୍ତ୍ତି ଦିଅ ।

## କାର୍ତ୍ତିକେୟଙ୍କୁ ପ୍ରାର୍ଥନା ।

କ୍ରୌଞ୍ଚହନ୍ତ୍ରେ ନମସ୍ତୁଭ୍ୟଂ ପାର୍ବତୀପ୍ରୀତିବର୍ଦ୍ଧନ ।
ନମସ୍ତେ ନାଗବେଶାୟ ନିତ୍ୟ ସ୍ୱର୍ଗଲୋକଂ ପ୍ରଦେହି ମେ ।

ହେ ଯାଜ୍ଞପ୍ରୀତ ଶକ୍ତି କ୍ରୌଞ୍ଚଘ୍ନ ! ତୁମ୍ଭଙ୍କୁ ନମସ୍କାର । ହେ ଦେବ ସେନାପତି ! ତୁମ୍ଭଙ୍କୁ ନମସ୍କାର । ମୋତେ ସ୍ୱର୍ଗଲୋକ ଦିଅ ।

---

ବୃଷଭଙ୍କୁ ପ୍ରାର୍ଥନା ।

ନମସ୍ତେ ଯଜମାନାୟ ସର୍ବଧର୍ମଫଳପ୍ରଦ ।
ଯଜ୍ଞରୂପ ନମସ୍ତୁଭ୍ୟଂ ଶିବପ୍ରୀତିଂ ପ୍ରଯଚ୍ଛ ମେ ॥

ସର୍ବଧର୍ମଫଳପ୍ରଦ ହେ ଯଜମାନ ! ତୁମ୍ଭଙ୍କୁ ନମସ୍କାର । ହେ ଯଜ୍ଞରୂପ ! ତୁମ୍ଭଙ୍କୁ ନମସ୍କାର । ମୋତେ ଶିବପ୍ରୀତି ପ୍ରଦାନ କର ।

---

ଚଣ୍ଡେଶ୍ୱରଙ୍କୁ ପ୍ରାର୍ଥନା ।

ଚଣ୍ଡରୁଦ୍ର ନମସ୍ତେଽସ୍ତୁ ଦେବାନାଂ ହିତକାରକ ।
ଦର୍ଶନାତ୍ତବ ମେ ଦେହି ବୀର୍ଯ୍ୟଂ ତେଜୋ ବଳଂ ଧୃତିଂ ॥

ଦେବତାମାନଙ୍କର ହିତକାରକ ହେ ଚଣ୍ଡରୁଦ୍ର ! ତୁମ୍ଭଙ୍କୁ ନମସ୍କାର । ତୁମ୍ଭ ଦର୍ଶନର ଫଳସ୍ୱରୂପ ବୀର୍ଯ୍ୟ, ତେଜ, ବଳ ଓ ଧୃତି ଦିଅ ।

---

କଳ୍ପବୃକ୍ଷଙ୍କୁ ପ୍ରାର୍ଥନା ।

କଳ୍ପବୃକ୍ଷ ନମସ୍ତେଽସ୍ତୁ କଳ୍ପନାସିଦ୍ଧିରସ୍ତୁ ମେ ।
ବ୍ରହ୍ମାବିଷ୍ଣୁଶିବଧ୍ୟେୟ ଦେହି ମେ ବାଞ୍ଛିତଂ ଫଳଂ ॥

ହେ କଳ୍ପବୃକ୍ଷ ! ତୁମ୍ଭଙ୍କୁ ନମସ୍କାର । ମୋହର କଳ୍ପନା ସିଦ୍ଧ ହେଉ । ହେ ବ୍ରହ୍ମାବିଷ୍ଣୁଶିବଧ୍ୟେୟ ! ମୋତେ ବାଞ୍ଛିତ ଫଳ ଦିଅ ।

ତିନିଥର ପ୍ରଦକ୍ଷିଣ କରି ପୁଣି ଏହି ଶ୍ଳୋକଦ୍ୱୟ ପଢ଼ିବ ।

ମହାମୃତଜଳୋଦ୍ଭୂତ ବ୍ରହ୍ମାବିଷ୍ଣୁଶିବାତ୍ମକ ।
ଅନାଦ୍ୟମଧ୍ୟନିଧନ ମହାପ୍ରଳୟପୂରଣ ॥
ସ୍ୱମୂର୍ତ୍ତେ ବିଧାନାନ୍ଦ ତ୍ରିଗୁଣାତ୍ମକ ସର୍ବଦା ।
ସର୍ବଦେବମୟଶ୍ଚାଗ୍ର୍ୟ କଳ୍ପବୃକ୍ଷ ନମୋଽସ୍ତୁ ତେ ॥

ହେ ମହାମୃତରସସମ୍ଭୂତ, ବ୍ରହ୍ମ ବିଷ୍ଣୁ ଶିବାତ୍ମକ, ଅନାଦିମଧ୍ୟାନ୍ତରହିତ, ମହାପ୍ରଳୟପ୍ରପୂରିତ, ବେଦମୂର୍ତ୍ତେ, ତ୍ରିଧାଭିନ୍ନ, ସର୍ବଦା ତ୍ରିଗୁଣାତ୍ମକ, ସର୍ବଦେବମୟ, ଅଚିନ୍ତ୍ୟ କଳ୍ପବୃକ୍ଷ ! ତୁମ୍ଭଙ୍କୁ ନମସ୍କାର ।

## ସାବିତ୍ରୀଙ୍କୁ ପ୍ରାର୍ଥନା ।

ବେଦମାତର୍ନମସ୍ତୁଭ୍ୟଂ ସାବିତ୍ରୀରୂପଧାରିଣୀ ।
ବ୍ରହ୍ମପ୍ରଜ୍ଞାଂ ଚ ମେଧାଂ ଚ ଦେହି ସର୍ବବରପ୍ରଦ ॥

ହେ ସାବିତ୍ରୀରୂପଧାରିଣି ବେଦମାତା ! ତୁମ୍ଭଙ୍କୁ ନମସ୍କାର । ହେ ସର୍ବବରପ୍ରଦ ! ମୋତେ ବ୍ରହ୍ମପ୍ରଜ୍ଞା ଏବଂ ମେଧା ଦିଅ ।

## ଶ୍ରୀ ଲିଙ୍ଗରାଜଙ୍କୁ ପ୍ରାର୍ଥନା ।

ନମସ୍ତ୍ରିଭୁବନେଶାୟ ନମସ୍ତେ କୃତ୍ତିବାସସେ ।
ତ୍ୱଦ୍ଦର୍ଶନଫଳଂ ଦେହି ମୋକ୍ଷସାଧନମୀଶ୍ୱର ।

ହେ କୃତ୍ତିବାସ ! ତୁମ୍ଭଙ୍କୁ ନମସ୍କାର, ହେ ତ୍ରିଭୁବନେଶ୍ୱର ! ତୁମ୍ଭଙ୍କୁ ନମସ୍କାର, ହେ ଈଶ୍ୱର ! ମୋତେ ମୋକ୍ଷର ଉପାୟସ୍ୱରୂପ ତୁମ୍ଭର ଦର୍ଶନ ଫଳ ଦିଅ ।

ଯତ୍କୃତଂ ଚ ମୟା ଦେବ ହ୍ୟଷ୍ଟମୂର୍ତ୍ତ୍ୟବଲୋକନଂ ।
ସମଗ୍ରଂ ତତ୍ଫଳଂ ଭୂୟାତ୍ ପ୍ରସାଦାତ୍ତବ ଶଙ୍କର ॥

ହେ ଦେବ ! ହେ ଶଙ୍କର ! ମୁଁ ଅଷ୍ଟମୂର୍ତ୍ତି, ଅବଲୋକନ କରିଥିବାରୁ, ତୁମ୍ଭ ଅନୁଗ୍ରହଦ୍ୱାରା ମୋତେ ତହିଁର ସମସ୍ତ ଫଳ ପ୍ରାପ୍ତି ହେଉ ।

କୃତ୍ତିବାସ ନମସ୍ତେଽସ୍ତୁ ଲିଙ୍ଗରାଜ ମହେଶ୍ୱର ।
ସ୍ୱର୍ଣ୍ଣକୂଟପତେ ଶମ୍ଭୋ ଜୟ ତ୍ରିଭୁବନେଶ୍ୱର ॥

ହେ ଲିଙ୍ଗରାଜ ! ମହେଶ୍ୱର ! କୃତ୍ତିବାସ ! ତୁମ୍ଭଙ୍କୁ ନମସ୍କାର । ହେ ସ୍ୱର୍ଣ୍ଣକୂଟପତି ! ଶମ୍ଭୁ ! ତ୍ରିଭୁବନେଶ୍ୱର ! ଆପଣ ଜୟଯୁକ୍ତ ହୁଅନ୍ତୁ

# ଶ୍ରୀଲିଙ୍ଗରାଜ ମହାପ୍ରଭୁଙ୍କର ଚତୁର୍ଦ୍ଦଶ ଯାତ୍ରା ।

| ଯାତ୍ରାମାନଙ୍କର ନାମ | ଅନୁଷ୍ଠାନ ଦିବସ |
|---|---|
| ୧ । ପ୍ରଥମାଷ୍ଟମୀ | — ମାର୍ଗଶିରମାସ କୃଷ୍ଣପକ୍ଷ ଅଷ୍ଟମୀ । |
| ୨ । ପ୍ରାବରଣ ଷଷ୍ଠୀ ବା ଓଢ଼ଣୀ ଷଷ୍ଠୀ | — ମାର୍ଗଶିର ଶୁକ୍ଳପକ୍ଷ ଷଷ୍ଠୀ । |
| ୩ । ପୁଷ୍ୟାଭିଷେକ | — ପୌଷ ପୂର୍ଣ୍ଣିମା । |
| ୪ । ମକରସଂକ୍ରାନ୍ତି | — ମାଘମାସ ସଂକ୍ରାନ୍ତି । |
| ୫ । ମାଘସପ୍ତମୀ | — ମାଘମାସ ଶୁକ୍ଳ ସପ୍ତମୀ । |
| ୬ । ଶିବରାତ୍ରି | — ଫାଲ୍‌ଗୁନମାସ କୃଷ୍ଣ ଚତୁର୍ଦ୍ଦଶୀ । |
| ୭ । ଅଶୋକାଷ୍ଟମୀ | — ଚୈତ୍ରମାସ ଶୁକ୍ଳପକ୍ଷ ଅଷ୍ଟମୀ । |
| ୮ । ଦମନକ ଭଞ୍ଜିକା | — ଚୈତ୍ରମାସ ଶୁକ୍ଳ ଚତୁର୍ଦ୍ଦଶୀ । |
| ୯ । ଅକ୍ଷୟ ତୃତୀୟା ବା ଚନ୍ଦନଯାତ୍ରା | — ବୈଶାଖମାସ ଶୁକ୍ଳପକ୍ଷ ତୃତୀୟା । — ଏହିଦିନଠାରୁ ଦ ୨୨ ଦିନ ପର୍ଯ୍ୟନ୍ତ ଏହି ଯାତ୍ରା ଅନୁଷ୍ଠିତ ହୁଏ । |
| ୧୦ । ପର୍ଣ୍ଣସ୍ୱମାଷ୍ଟମୀ | — ଆଷାଢ଼ମାସ ଶୁକ୍ଳପକ୍ଷ ଅଷ୍ଟମୀ । |
| ୧୧ । ଶୟନ ଚତୁର୍ଦ୍ଦଶୀ | — ଆଷାଢ଼ମାସ ଶୁକ୍ଳପକ୍ଷ ଚତୁର୍ଦ୍ଦଶୀ । |
| ୧୨ । ପବିତ୍ରାରୋପଣ | — ଶ୍ରାବଣମାସ ପୂର୍ଣ୍ଣିମା । |
| ୧୩ । ଯମଦ୍ୱିତୀୟା | — କାର୍ତ୍ତିକମାସ ଶୁକ୍ଳପକ୍ଷ ଦ୍ୱିତୀୟା । |
| ୧୪ । ଉତ୍ଥାନ ଚତୁର୍ଦ୍ଦଶୀ | — କାର୍ତ୍ତିକମାସ ଶୁକ୍ଳପକ୍ଷ ଚତୁର୍ଦ୍ଦଶୀ । |

## ତୀର୍ଥଯାତ୍ରୀଙ୍କର ପୁରୋହିତନିର୍ବାଚନ ।

ଦୂରଦେଶାଗତ ଯାତ୍ରୀମାନେ ଭ୍ରମରେ ପତିତହୋଇ ଏଠାରେ ଉପଯୁକ୍ତ ପୁରୋହିତ ନିର୍ବାଚନ କରି ପାରନ୍ତି ନାହିଁ । ସେହି ଭ୍ରମ ନିରାକରଣ ନିମିତ୍ତ ପ୍ରତ୍ୟେକ ଧର୍ମପ୍ରାଣ ହିନ୍ଦୁର ଯତ୍ନ କରିବା ଉଚିତ । ଏଠାରେ ହିନ୍ଦୁରାଜା ନ ଥିବାରୁ ଅବଜ୍ଞ୍ୟ ଶୂଦ୍ରମାନେ ବର୍ଣ୍ଣାଶ୍ରମ ନିୟମ ପାଳନ ନ କରି ଯଥେଚ୍ଛ ବ୍ୟବହାର କରୁ ଅଛନ୍ତି । କୌଣସି କୌଣସି ଶୂଦ୍ର ବ୍ରାହ୍ମଣମାନଙ୍କ ଗୁଲ୍ଫ ପଇତା ପକାଇ ଦୂରଗତ ଯାତ୍ରୀମାନଙ୍କ ନିକଟରେ ଆପଣାକୁ ବ୍ରାହ୍ମଣବୋଲି ପରିଚୟ ଦେଇ ସେମାନଙ୍କଠାରୁ ପୂଜା ଏବଂ ଦାନ ଗ୍ରହଣ କରୁଅଛନ୍ତି । ଶୂଦ୍ରମାନଙ୍କୁ ଦାନଦେବାର କୌଣସି ଫଳ ନାହିଁ, ତୀର୍ଥକ୍ଷେତ୍ରରେ ଅଳ୍ପପରିମିତ ଦାନ ବ୍ରାହ୍ମଣକୁ ଦେଲେ ଜଳରେ ତୈଳବିନ୍ଦୁ ବିସ୍ତୃତ ହେଲପରି ବହୁଗୁଣରେ ଫଳପ୍ରଦ ହୁଏ । ପ୍ରମାଣ ଅଛି—

ଦାନମଳ୍ପମପି କ୍ଷେତ୍ରେ ତୈଳବିନ୍ଦୁରିବାମ୍ଭସି ।
ଅକ୍ଷୟ୍ୟଂ ସମବାପ୍ନୋତି ବିତ୍ତଂ ବିପ୍ରକରାର୍ପିତଂ ॥

ପ୍ରତ୍ୟେକ ଧର୍ମପରାୟଣ ହିନ୍ଦୁ ସ୍ୱଳ୍ପଚେଷ୍ଟାରେ ବ୍ରାହ୍ମଣ ପୁରୋହିତ ନିର୍ବାଚନ କରି ଅକ୍ଷୟ ପୁଣ୍ୟ ଅର୍ଜନ କରି ପାରିବେ ।

କୌଣସି କୌଣସି ଦୂରଦେଶାଗତ ଯାତ୍ରୀ ଜାଣି ନ ପାରି ଶୂଦ୍ର ପୁରୋହିତ ନିର୍ବାଚନ କରି ଯାଇ ଅଛନ୍ତି । ସେମାନଙ୍କ ମଧ୍ୟରୁ କାହାର କାହାର ସୁବିଜ୍ଞ, ବିଦ୍ୱାନ୍, ଧର୍ମପରାୟଣ ଉତ୍ତରାଧିକାରୀ ଏଠାକୁ ଆସି ବିଚକ୍ଷଣତାସହ ପୂର୍ବର ଶୂଦ୍ରପୁରୋହିତଙ୍କୁ ପରିତ୍ୟାଗ କରି ନୂତନ ବ୍ରାହ୍ମଣ ପୁରୋହିତ ନିଯୁକ୍ତ କରୁ ଅଛନ୍ତି । ଏହାର ପ୍ରମାଣ ନିମ୍ନଲିଖିତ ମନ୍ତବ୍ୟରୁ ମିଳିବ ।

# ନୂତନ ବ୍ରାହ୍ମଣନିର୍ଣ୍ଣୟ ପତ୍ର ।

( ବଙ୍ଗଳାରୁ ଅନୁବାଦିତ )

ଶ୍ରୀଶ୍ରୀ ଦୁର୍ଗା ।

ଆମ୍ଭେ ଭୁବନେଶ୍ୱରରେ ଶିବ ଦର୍ଶନାର୍ଥ ୩ । ୪ ଦିନ ରହିଲୁଁ । ଏହି ସମୟରେ ପଣ୍ଡା ନିର୍ଦ୍ଧାରଣ ସମ୍ବନ୍ଧରେ ଜଣାନ୍ତ ବୋଲି ଯୋଗ ଉପସ୍ଥିତ ହେଲା । ପଣ୍ଡାମାନେ ଦୁଇପକ୍ଷ, ଏକପକ୍ଷ ବଡ଼ୁ ଅର୍ଥାତ୍ ଶୂଦ୍ରଜାତୀୟ, ଅପରପକ୍ଷ ବ୍ରାହ୍ମଣ । କିନ୍ତୁ ବଡ଼ୁପକ୍ଷ ବ୍ରାହ୍ମଣ ବୋଲି ପ୍ରକାଶ କରନ୍ତି ଏବଂ ସାଧାରଣ ଲୋକ ଅଲ୍ପସମୟ ମଧ୍ୟରେ ସେମାନଙ୍କୁ ବ୍ରାହ୍ମଣ ବୋଲି ବିଶ୍ୱାସ ପୂର୍ବକ ପଣ୍ଡାସ୍ୱୀକାର କରି ଏହି ସ୍ଥାନରେ କାର୍ଯ୍ୟାଦି ନିର୍ବାହ କରନ୍ତି । କିନ୍ତୁ ଆମ୍ଭେ ଏ ବିଷୟରେ ସନ୍ଦିହାନ ହୋଇ ବିଶେଷ ଆଲୋଚନା କରିଅଛୁଁ । ସହରର ମ୍ୟାଜିଷ୍ଟ୍ରେଟର ଶ୍ରୀଯୁକ୍ତ ବାବୁ ବ୍ରଜେନ୍ଦ୍ରନାଥ ଗଙ୍ଗୋପାଧ୍ୟାୟ ଓ ସହର କମିଟିର ତତ୍ତ୍ୱାବଧାରକ ମେମ୍ବର ଓ କଟକ ଜଜକୋର୍ଟର ଓକିଲ ଶ୍ରୀଯୁକ୍ତ ବାବୁ ପ୍ରିୟନାଥ ଚଟ୍ଟୋପାଧ୍ୟାୟ ମହାଶୟ ଓ ଅନ୍ୟାନ୍ୟ ଭଦ୍ର ଲୋକଙ୍କ ନିକଟରେ ଅନୁସନ୍ଧାନ କରି ଜାଣିଲୁଁ ଯେ ବଡ଼ୁମାନେ ଶୂଦ୍ରଜାତୀୟ ଅଟନ୍ତି । ସହରର ସେବା ଯୋଗ୍ୟ ଉକ୍ତ ଉଭୟ ଶ୍ରେଣୀ ମଧ୍ୟରେ ଗୋଟିଏ ମୋକଦ୍ଦମା ହୋଇଥିଲା । ଏହି ମୋକଦ୍ଦମା କଟକର ସ୍ପେସିଆଲ ଜଜ ବାହାଦୁର ୧୯୦୦ ସନର ମାର୍ଚ୍ଚ ୧୪ ତାରିଖରେ ନିଷ୍ପତ୍ତି କରିଅଛନ୍ତି । ଏ[illegible]ଜମେଣ୍ଟର ରାୟ ପାଠ କରି ଦେଖିଲୁଁ ଯେ ବଡ଼ୁ ଶ୍ରେଣୀ ଶୂଦ୍ରଜାତୀୟ । "The respondents are the Baru or Sudra Sebaks" ଅମୃତ ବୃନ୍ଦାବନ ଶ୍ରୀଯୁକ୍ତ ବାବୁ ଗୋପାଳଚନ୍ଦ୍ର ଚୌଧୁରୀ ମହାଶୟଙ୍କର ପଣ୍ଡା ନିର୍ବାଚନ ସମ୍ବନ୍ଧୀୟ ମୀମାଂସା ପତ୍ରରେ ଦେଖିଲୁ ଯେ ଦାମୋଦର ତିଆରୀ ଯେଉଁ ସ୍ଥାନର କହିଅଛୁ ଉର୍ଦ୍ଧ୍ୱରେ

ବଡ଼ୁ ଶବ୍ଦର ଅପଭ୍ରଂଶ ମାତ୍ର ଅର୍ଥାତ୍ ଦାମୋଦର ବଡ଼ୁ ଶିଙ୍ଗାରୀ । ସୁତରାଂ ଦାମୋଦର ବଡ଼ୁ ଶ୍ରେଣୀ ଭୁକ୍ତ ଶୂଦ୍ରସେବକ ମାତ୍ର ! ତେବେ ଏହି ପ୍ରଶ୍ନ ହୋଇ ପାରେ ଯେ ଏହି ବଡ଼ୁମାନେ ଶୂଦ୍ରଜାତ ଥାଇ କିପରି ପଣ୍ଡା ହେବାର ସନନ୍ଦ ପାଇଲେ । ଅନୁସନ୍ଧାନ କରି ଜାଣିଲୁଁ ଯେ ଶିବ ମନ୍ଦିରରେ ସର୍ବଜାତି ପୂଜା କରି ପାରନ୍ତି । ବିଶେଷତଃ ଏମାନେ ଶିବଙ୍କର ପୁଷ୍ପାଦି ଯୋଗାଇ ଦିଅନ୍ତି ଓ ଶିଙ୍ଗାର କରନ୍ତି ଅର୍ଥାତ୍ ପୁଷ୍ପାଦିଦ୍ୱାରା ଶିବଙ୍କୁ ସଜାନ୍ତି । ସେଥିପାଇଁ ଏମାନେ ଶିଙ୍ଗାରୀ ଶବ୍ଦରେ ଅଭିହିତ ହୋଇଥାନ୍ତି । କିନ୍ତୁ ପୁରୀ ଧାମରେ ଶିଙ୍ଗାରୀ ଶ୍ରେଣୀ ବ୍ରାହ୍ମଣ ଦୃଷ୍ଟ ହେବେ, ଯେହେତୁ ସେଠାରେ ଶୂଦ୍ରାଦି ଅର୍ଥାତ୍ ବ୍ରାହ୍ମଣ ଭିନ୍ନ ଅନ୍ୟ ଜାତିର ଠାକୁର ଛୁଇଁବାର ଅଧିକାର ନାହିଁ । ବଡ଼ୁମାନେ ଭୁବନେଶ୍ୱରରେ ସଙ୍ଗତିସମ୍ପନ୍ନ । ବ୍ରାହ୍ମଣ ପଣ୍ଡାମାନେ ନିତାନ୍ତ ଦୁର୍ଦ୍ଦଶାଗ୍ରସ୍ତ । ବିଶେଷତଃ ପାରସ୍ପରିକ କଳହରେ ଦିନକୁ ଦିନ ସେମାନଙ୍କ ଅବସ୍ଥା ଅତ୍ୟନ୍ତ ଶୋଚନୀୟ ହେଉଅଛି । ଦେଖିଲୁଁ ମୁକ୍ତାଗାସ୍ତର କେହି କେହି ଭ୍ରମରେ ପଡି ବଡ଼ୁଶ୍ରେଣୀରୁ ଅର୍ଥାତ୍ ବର୍ତ୍ତମାନ ଶିଙ୍ଗାରୀ ନାମରେ ଅଭିହିତ ବ୍ୟକ୍ତିମାନଙ୍କ ମଧ୍ୟରୁ କୌଣସି କୌଣସି ବ୍ୟକ୍ତିଙ୍କୁ ପଣ୍ଡା ନିଯୁକ୍ତ କରିଅଛନ୍ତି । ଆମ୍ଭର ବିଶ୍ୱାସ ଯଦି ସେମାନେ ସମ୍ୟକ୍ ଅବଗତ ହୋଇଥାନ୍ତେ ଓ ଅନୁସନ୍ଧାନ କରିଥାନ୍ତେ ତେବେ ଦାମୋଦର ପ୍ରଭୃତି ବଡ଼ୁ ଶ୍ରେଣୀଭୁକ୍ତ ଶୂଦ୍ରଜାତୀୟ ବ୍ୟକ୍ତିମାନଙ୍କୁ କେବେହେଁ ପଣ୍ଡା ସ୍ୱୀକାର କରି ନ ଥାନ୍ତେ । ଅତଏବ ଆମ୍ଭେ ବଡ଼ୁଶ୍ରେଣୀଙ୍କୁ ପଣ୍ଡାସ୍ୱୀକାର କରିବା ଅସଙ୍ଗତ ମ[redacted]ର ୵କାଶୀକାନ୍ତ ଅଗ୍ରଣୀ ଚୌଧୁରୀ ମହାଶୟଙ୍କର କର୍ଦ୍ଦାଟଭ ବ୍ରାହ୍ମଣ ପଣ୍ଡାର ବଂଶଧର ୵ ନାରାୟଣ ପଣ୍ଡାର ପୁତ୍ର ମଧୁସୂଦନ ପଣ୍ଡାଙ୍କୁ ପଣ୍ଡା ନିର୍ବାଚନ କରି ଏଠାର ପଣ୍ଡାର କାର୍ଯ୍ୟାଦି ତାହାଙ୍କଦ୍ୱାରା ସମ୍ପନ୍ନ କରାଉଛୁ ।

ଅମ୍ଭ ମଣ୍ଡଳରେ ପତ୍ନୀ ଶ୍ରୀମତୀ ଗିରିଜାଭବାସିନୀ ଦେବୀ ଚୌଧୁରାଣୀ, ଅମ୍ଭର ପୁତ୍ରବଧୂ ଓ ଅମ୍ଭର କନ୍ୟା, ଶ୍ରୀପ୍ରାଣଚନ୍ଦ୍ର ସାନ୍ୟାଲ ଓ ଶ୍ରୀସୁରେନ୍ଦ୍ରନାଥ ବନ୍ଦୋପାଧ୍ୟାୟ, ଶ୍ରୀଦୁର୍ଗାପ୍ରସାଦ ଚକ୍ରବର୍ତ୍ତୀ ଓ ତାହାର ସ୍ତ୍ରୀ ଓ ଶିଶୁକନ୍ୟା ଏବଂ ଅମ୍ଭର ଖାନସାମା ଶ୍ରୀ ଦଶେନ୍ଦ୍ରଚନ୍ଦ୍ର ଦେ ଓ ଶରତଚନ୍ଦ୍ର ଦେ ସ୍ଥଲେ । ଇତି । ସନ ୧୩୧୭ ସାଲ ୧୮ ଫାଲ୍ଗୁନ ।

ଶ୍ରୀରମେଶଚନ୍ଦ୍ର ଆଚାର୍ଯ୍ୟ ଚୌଧୁରୀ ।
। ସାଂ ମୁକ୍ତାଗାଛା । ଜି । ମୈମନସିଂହ ।

ଏହାଙ୍କପରି ଅସଂଖ୍ୟ ଧର୍ମ୍ମପ୍ରାଣ ବ୍ୟକ୍ତି ଶୂଦ୍ରମାନଙ୍କ ପରିତ୍ୟାଗ କରି ବ୍ରାହ୍ମଣମାନଙ୍କୁ ପୁରୋହିତ ନିର୍ବାଚନ କରୁ ଅଛନ୍ତି ।

---

## ମଲ୍ଲିଆ ଆତଙ୍କ ।

ଯାତ୍ରୀମାନେ ଶ୍ରୀଲିଙ୍ଗରାଜ ମହାପ୍ରଭୁଙ୍କୁ ଦର୍ଶନ କରି ମନ୍ଦିର ମଧ୍ୟରୁ ବାହାରିବା ମାତ୍ରକେ ସିଂହଦ୍ୱାରଠାରୁ ଷ୍ଟେସନ ପର୍ଯ୍ୟନ୍ତ ବହୁସଂଖ୍ୟକ ମାଗନ୍ତାଲୋକ ସେମାନଙ୍କୁ ଘେରି ପଇସା ମାଗନ୍ତି । ଏମାନଙ୍କ ମଧ୍ୟରୁ ଅଧିକାଂଶ ଲୋକ କପିଳେଶ୍ୱର ମହାପ୍ରଭୁଙ୍କର "ମଲ୍ଲିଆ" ପଦଧାରୀ ଶୁଦ୍ର ସେବକ ଅଟନ୍ତି । ଏମାନଙ୍କ ଘର କପିଳେଶ୍ୱର ଗ୍ରାମରେ । ଏମାନେ ବଡ଼ୁମାନଙ୍କପରି ମାଳାକାରରେ ପଇତା ପକାଇ ବ୍ରାହ୍ମଣବୋଲି ଆତ୍ମପରିଚୟ ଦେଇ ଦଳବଦ୍ଧ ହୋଇ ପଇସା ମାଗି ଯାତ୍ରୀମାନଙ୍କୁ ଅତ୍ୟନ୍ତ ବିରକ୍ତ କରନ୍ତି । ଯାତ୍ରୀମାନେ ମନେ କରନ୍ତି ଏହି ଘୃଣିତ କାର୍ଯ୍ୟ ଭୁବନେଶ୍ୱରବାସୀ ପଣ୍ଡାମାନଙ୍କଦ୍ୱାରା ଅନୁଷ୍ଠିତ ହେଉଅଛି । କିନ୍ତୁ ଆମ୍ଭେମାନେ ଅନୁସନ୍ଧାନଦ୍ୱାରା ବୁଝିଅଛୁଁ କୌଣସି ଭୁବନେଶ୍ୱରର ଲୋକ ଏମାନଙ୍କର ଅନ୍ତର୍ଗତ ନୁହନ୍ତି । ବିଶେଷତଃ ବ୍ରାହ୍ମଣ ଓ ବଡ଼ୁଙ୍କ ମଧ୍ୟରୁ କୌଣସି ଲୋକ ଏପରି ମାଗି ଗୋଡ଼ାନ୍ତି ନାହିଁ । ଯେ କେହି ସାମାନ୍ୟ ଚେଷ୍ଟା କଲେ ଏ ବିଷୟ ବୁଝି ପାରିବେ । ଏହି ଦଳକୁ କୌଣସି ରୂପେ ପ୍ରଶ୍ରୟ ଦେବା ଉଚିତ ନୁହେଁ । କିନ୍ତୁ ଯାତ୍ରୀମାନଙ୍କର ଅତିରିକ୍ତ ଉଦାରତା ଏହି ବିରକ୍ତିକର ଦଳବୃଦ୍ଧିର କାରଣ । ଯଦି ପ୍ରତ୍ୟେକ ଯାତ୍ରୀ ଏମାନଙ୍କର ଛଳନା ବୁଝି ଏମାନଙ୍କୁ କିଛି ନ ଦେଇ ବିଦାୟ ଦିଅନ୍ତି ତେବେ ଗୋଟିଏ ପବିତ୍ର ତୀର୍ଥରୁ ବିରକ୍ତିକର ପ୍ରବଞ୍ଚନା ଶୀଘ୍ର ଉନ୍ମୂଳିତ ହେବ ।

# ପ୍ରବେଶିକା ।

ପ୍ରାଚୀନ ତଥା ନବୀନ ଉତ୍କଳ ସାହିତ୍ୟରେ [illegible] ପ୍ରାଚୁର୍ଯ୍ୟ ଯେପରି ସାଧାରଣ ସତ୍ୟାନୁସନ୍ଧିତ୍ସା ବା ଐତିହାସିକ ତଥ୍ୟ ନିରୂପଣରେ ପ୍ରଗାଢ଼ ନିଷ୍ଠା ବା ଶ୍ରମ ସେପରି ସୁଲଭ ନୁହେଁ । ଯାହି ଦୁର୍ଲ୍ଲଭ ତାହାହିଁ ସ୍ମରଣୀୟ-ସାରଳା'ଚରିତ ପୁସ୍ତକ ଖଣ୍ଡି ସେହି ଶ୍ରେଣୀର ସାରଳା ଚରିତରେ ଲେଖକ ସୁଦୂର ଅତୀତର ପ୍ରଗାଢ ଅନ୍ଧତମସ ଭେଦ କରି କବିସତ୍ତମ ପ୍ରଦେଶରୁ କେତେ ଗୁରୁ ସତ୍ୟରତ୍ନ ଆହରଣ କରି ଆମ୍ଭମାନଙ୍କ ସମ୍ମୁଖରେ ଉପସ୍ଥାପିତ କରିଅଛନ୍ତି । ଆମ୍ଭମାନଙ୍କ ଦେଶରେ ଇତିହାସ ( ମାଦଳାପାଞ୍ଜି ବ୍ୟତୀତ ) ଲେଖିବା ବା ଜୀବନୀ ଲେଖିବା ପଦ୍ଧତି ପୂର୍ବରୁ ନ ଥିଲା । କବିମାନେ ନିଜନିଜ କାବ୍ୟରେ କଦାଚିତ୍ ଅତି ସଂକ୍ଷିପ୍ତ ବା ଆତ୍ମପରିଚୟ ପ୍ରଦାନ କରୁଥିଲେ, କିନ୍ତୁ ତାହା ଅନେକ ସ୍ଥଳରେ ଏପରି ସ୍ଥୂଳ ଯେ ତହିଁରୁ କବିଙ୍କର ସମସ୍ତ ଘଟନାପୂର୍ଣ୍ଣ ଜୀବନୀର ଅତି ସ୍ୱଳ୍ପ ଆଭାସ ମିଳେ । ଲେଖକ ଅତୀବ ଯତ୍ନରେ, ଓ ଗଭୀର ଗବେଷଣା ପୂର୍ବକ ଇତିହାସ, କିମ୍ବଦନ୍ତୀ ପ୍ରଭୃତିର ଓ କବିଙ୍କ ନିଜ କଳ୍ପନା ସାହାଯ୍ୟରେ-ସାରଳାଦାସଙ୍କର ସର୍ବାଙ୍ଗ ସୁନ୍ଦର ଜୀବନୀ ଗୋଟିଏ ରଚନା କରିଅଛନ୍ତି । ପୁସ୍ତକଟିର ସମାଲୋଚନା କରିବା ମୋର ଉଦ୍ଦେଶ୍ୟ ନୁହେ । ପୁଙ୍ଖାନୁପୁଙ୍ଖରୂପେ ଦେଖିଲେ କୌଣସି ସ୍ଥାନରେ ଭ୍ରମ ଦୃଷ୍ଟିଗୋଚର ହୋଇପାରେ । କିନ୍ତୁ ତାହା ବୋଲି ପୁସ୍ତକ ଖଣ୍ଡି ପ୍ରମାଦପୂର୍ଣ୍ଣ ନୁହେ । କେବଳ ଦୋଷ ବର୍ଜ୍ଜିତ ନୁହେ ବୋଲି ଯେ ଏହା ସ୍ମରଣୀୟ ଆମ୍ଭେମାନେ ତାହା କହୁ ନାହୁଁ—ଏହା ଉତ୍କଳ ସାହିତ୍ୟରେ ପ୍ରଥମ ଦୀର୍ଘତମ ଧାରାବାହିକ ଜୀବନୀ । ଏହି ହେତୁ ଏହା ଆମ୍ଭମାନଙ୍କଠାରେ ଆଦରଣୀୟ । ପୂର୍ବରୁ କେହି କେହି କବିମାନଙ୍କ କ୍ଷୁଦ୍ର କ୍ଷୁଦ୍ର ଜୀବନୀ ପତ୍ରିକାଦିରେ ଲେଖିଛନ୍ତି ସତ୍ୟ—ତାହା ସବୁ ଅପୂର୍ଣ୍ଣ । କିନ୍ତୁ ଏ ପୁସ୍ତକ ଖଣ୍ଡି ଭିନ୍ନ ସ୍ୱଭାବ । ଏଥିରେ

କବିଙ୍କର ବାଲ୍ୟଜୀବନ, ବିଦ୍ୟାଶିକ୍ଷା, କବିତ୍ୱସ୍ଫୂର୍ତ୍ତି ଧର୍ମଭାବ ପ୍ରଭୃତି ବିଷଦ ଅଲୋଚନା ହୋଇଅଛି । ପୁଣି କବିଙ୍କର ରଚିତ ମହାଭାରତର ଗୋଟିଏ ସୁନ୍ଦର, ସରଳ ଏବଂ ସଂକ୍ଷିପ୍ତ ସମାଲୋଚନା ଯୋଗ କରା ହୋଇଅଛି । ସମାଲୋଚନାଟି ଏପରି ପ୍ରୀତିପ୍ରଦ ଯେ ପୁସ୍ତକ ଖଣ୍ଡି ସମାଲୋଚନାଟି ନ ପଢିଲେ ମନର ଶାନ୍ତି ହୁଏ ନାହିଁ । ତହିଁରୁ ଅନେକ ଶିଖିବାର ଅଛି । ସାରଳା ମହାଭାରତ ପାଠକ ମାନଙ୍କର ଏହା ସର୍ବପ୍ରଥମେ ପଢିବା ଉଚିତ । ଏଖଣ୍ଡି ପଢିଲେ ପାଠକେ 'ବ୍ୟାସଙ୍କୁ' ଦାଉ କେତେ ଅନ୍ତର ବୁଝିପାରିବେ । ମୋର ଭରସା ଉତ୍କଳ ପାଠକ ସାଧାରଣ ଏ ପୁସ୍ତକ ଖଣ୍ଡିର ଉପଯୁକ୍ତ ଆଦର କରିବେ ।

| | |
|---|---|
| କଟକ ।<br>୧୭—୧—୧୧ | ଶ୍ରୀ ବ୍ରଜସୁନ୍ଦର ଦାସ |

# ବିଜ୍ଞାପନ ।

ଏ ପୁସ୍ତକର ପ୍ରଥମ ସଂସ୍କରଣ ନିଃଶେଷ ହୋଇ ଯାଇ ଥିବାରୁ, ଏହାର ଦ୍ୱିତୀୟ ସଂସ୍କରଣ ପ୍ରକାଶ କରିବାକୁ ସାହସୀ ହେଲି । ଶିକ୍ଷା ବିଭାଗର ଅଧିକାରୀଗଣ ଏବଂ ଉତ୍କଳର ପାଠକ ସମାଜ ଏଥିପ୍ରତି ସୁଦୃଷ୍ଟି ପ୍ରଦାନ କରି ଥିବାରୁ ସେମାନଙ୍କଠାରେ କୃତଜ୍ଞତା ଅର୍ପଣ କରୁଅଛି ।

| | |
|---|---|
| କଟକ ।<br>୪ । ୪ । ୧୯ । | ଶ୍ରୀ ମୃତ୍ୟୁଞ୍ଜୟ ରଥ । |